କଥା-କଥାନୀ - ୨

# କଳାହାଣ୍ଡିର ବୀରଗାଥା

ଡ଼ଃ. ମହେନ୍ଦ୍ର ମିଶ୍ର



କଥା-କଥାନୀ-୨

# କଳାହାଣ୍ଡିର ବୀରଗାଥା

ସଂକଳନ :

ଡଃ. ମହେନ୍ଦ୍ର ମିଶ୍ର

ପ୍ରଚ୍ଛଦ ଓ ଅଲଙ୍କରଣ:

ରମେଶ ଗୁମାନ ସିଂହ

ମୁଦ୍ରଣ :

**ଶୋଭନ୍**

ଆଚାର୍ଯ୍ୟ ବିହାର, ଭୁବନେଶ୍ୱର

ପ୍ରକାଶନ କାଳ:

ଡିସେମ୍ବର ୧୯୯୯

ପ୍ରକାଶକ:

**ଶିକ୍ଷାସନ୍ଧାନ**

ଏ-୧୨, ବରମୁଣ୍ଡା ହାଉସିଂ ବୋର୍ଡ଼ କଲୋନୀ

ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩

ଫୋନ୍/ଫାକ୍ସ : ୦୬୭୪-୫୫୦୬୫୬

ମୂଲ୍ୟ : ଅଠର ଟଙ୍କା ମାତ୍ର



କଥା-କଥାନୀ-୨

# କଳାହାଣ୍ଡିର ବୀରଗାଥା

ଡ଼ଃ. ମହେନ୍ଦ୍ର ମିଶ୍ର




ଶିକ୍ଷାସନ୍ଧାନ
ଏ-୧୨, ହାଉସିଂ ବୋର୍ଡ଼ କଲୋନୀ
ବରମୁଣ୍ଡା, ଭୁବନେଶ୍ୱର - ୭୫୧ ୦୦୩

# ମୁଖବନ୍ଧ

ଆଦିବାସୀ କଥନିକା ପ୍ରକାଶନର ଏହା ଦ୍ୱିତୀୟ ପୁସ୍ତକ । ପୁସ୍ତକ ବିଷୟରେ "କଳାହାଣ୍ଡିର ବୀରଗାଥା" ସଂକଳକ ସୂଚନା ଦେଇଛନ୍ତି । ଆଶା କରୁଛୁ, ପୂର୍ବ ପ୍ରକାଶିତ ଲୋକଗଳ୍ପ ସଂକଳନ "ଗୋଣ୍ଡ ଲୋକକଥା" ଭଳି ଏହା ମଧ୍ୟ ପାଠକ ମହଲରେ ଆଦୃତ ହେବ ।

ଏ ପୁସ୍ତକର ଅନୁବାଦକ ଡଃ. ମହେନ୍ଦ୍ର ମିଶ୍ରଙ୍କୁ ଏବଂ ପ୍ରକାଶନରେ ସହାୟତା ଯୋଗାଇଥିବା ସଂସ୍ଥା "ଆକ୍ସନ ଏଡ଼"କୁ ମୁଁ କୃତଜ୍ଞତା ଜଣାଉଛି । ପୁସ୍ତକଟିର ଅଳଂକରଣ ପାଇଁ ଶ୍ରୀ ରମେଶ ଗୁମାନସିଂହ, ଲିପି ସଜ୍ଜା ପାଇଁ ଶ୍ରୀ ଲୋକନାଥ ପଣ୍ଡା ଏବଂ ବହିଟିର ସମ୍ପାଦନାରେ ଶ୍ରୀ ପ୍ରଫୁଲ୍ଲ ବେହେରା ସହାୟତା କରିଥିବାରୁ ସେମାନେ ସମସ୍ତେ ଧନ୍ୟବାଦାର୍ହ ।

ଅନୀଲ ପ୍ରଧାନ

# ସୂଚନା

କଳାହାଣ୍ଡିରେ ଘୋଗିଆ, ଯାଚକ, ପରଘନିଆ, ବଗୁଆ, ମରାଲ, ବିରଥିଆ ପ୍ରଭୃତି ନାମରେ ଅନେକ ଲୋକଗାୟକ ଅଛନ୍ତି । ଏମାନଙ୍କ ପେଶା ହେଉଛି ଗାଁ ଗାଁ ବୁଲି ବୀରଗାଥା ଗାଇ ପେଟ ପୋଷିବା । ଏମାନେ ଏହି ଗୀତକୁ ବିଭିନ୍ନ ନାଁ ଦେଇଥାନ୍ତି । ଗୀତଟି ଲମ୍ବା । ତା ଭିତରେ ବଡ଼ କାହାଣୀଟିଏ ଥାଏ । କାହାଣୀ ଭିତରେ ବି କାହାଣୀ ଥାଏ । ଏମାନେ ରାତିରେ ଏ ଗୀତ ଗାଆନ୍ତି । ସାଙ୍ଗରେ ବାଦ୍ୟଯନ୍ତ୍ର ଥାଏ । ବ୍ରହ୍ମବୀଣା, ଢୁନ୍‌ଢୁନିଆ, କିଁକରି, ବାଂଶ, ବଂଶୀ, ଢ଼ୋଲ, ଢ଼ାପ ପ୍ରଭୃତି । ଜାତି ଅନୁସାରେ ଗାୟକ ଓ ବାଦ୍ୟ ରହିଛି ।

କଳାହାଣ୍ଡିର ବୀରଗାଥାର ନାଁ ନାୟକ ଓ ନାୟିକାକୁ ନେଇ ହୋଇଅଛି । ଯେମିତିକି ଖରତମାଲ ବୀର, ସୁନାଧର-ରମେଳା, ମାଧବ-ରୂପମତୀ, ରୂପାଧର-ହିରନ୍ଦ୍ରି । ଯୁଦ୍ଧ, ପ୍ରେମ ଓ ରାଜ୍ୟଜୟ ଏହି ଗାଥାର ମୂଳକଥା ।

ଇଂଲଣ୍ଡର ମେଟ୍ରିକାଲ୍ ରୋମାନସ୍ ପରି କଳାହାଣ୍ଡିର ବୀରଗାଥା । ଏଗୁଡ଼ିକ କାଳ୍ପନିକ କାବ୍ୟ । କିନ୍ତୁ କଳାହାଣ୍ଡି ମାଟିରୁ କ୍ରମଶଃ ବିଲୁପ୍ତ ହେଉଥିବା ଏହି ବୀରଗାଥାଗୁଡ଼ିକ ଏବେ ବି ଅନେକ ଜାଗାରୁ ସଂଗ୍ରହ ହେବା ଦରକାର । ଏଠାରେ କେବଳ ତିନୋଟି କଥା ଦିଆଯାଇଛି । କଳାହାଣ୍ଡି ବୀରମାଟି ହୋଇ ନଥିଲେ, ଏଠୁ ବୀରଗାଥା ବାହାରିଥାନ୍ତା କିପରି ?

ମହେନ୍ଦ୍ର ମିଶ୍ର

# ସୂଚିପତ୍ର

# ଖରତମାଲ ବୀର

ଗୌଡ଼େଶ୍ୱର ବୋଲି ଗୋଟିଏ ରାଜ୍ୟ । ସେ ରାଜ୍ୟର ରଜାର ନାଁ ନାଗେଶ୍ୱର । ରାଣୀ କଲ୍ୟାଣୀ । ଭାରି ପରୋପକାରୀ । ଧର୍ମ କର୍ମରେ ମନ । ଦାନ ପୁଣ୍ୟ କରନ୍ତି । ଲୋକଙ୍କ ଦୁଃଖ ସହି ପାରନ୍ତି ନାହିଁ । ଲୋକେ କହୁଥିଲେ, ରାଣୀ କଲ୍ୟାଣୀ ଦୟାର ଅବତାର । ଗାଁ ଲୋକେ ତାଙ୍କୁ କୁଲେନ୍ ରାନୀ ବୋଲି ଡାକୁଥିଲେ ।

ହେଲେ ନାଗେଶ୍ୱର ରଜା କଥା ଅଲଗା । ଲଡୁଆ ଲୋକ । ଦେବୀ ଦେବତାଙ୍କୁ ସେ ମାନୁନଥିଲେ । ଇଷ୍ଟଦେବୀ ଅପୂଜା ରହୁଥିଲେ । ନୂଆଖାଇ କି ଖଣ୍ଡାବସା ଦିନ ଆସୁ । ଦୀପଟିଏ ବି ଦେବୀଙ୍କ ପାଖରେ ଜାଳୁ ନଥିଲେ । ଅକତ୍(ଚାଉଳ) ଟିକେ ବି ଦେଉନଥିଲେ ।

ନାଗେଶ୍ୱରଙ୍କ ବାହୁ ବଳଥିଲା । ଆଉ ଗୋଟିଏ ଦୁର୍ଗୁଣ ଥିଲା । ସେ ମଦ ପିଉଥିଲେ । ମଦ ପିଇଲେ ହିତାହିତଜ୍ଞାନ ରହୁନଥିଲା । ନିଜ ଲୋକଙ୍କୁ ବି ସେ ହଇରାଣ କରୁଥିଲେ । ଲୋକେ ତାଙ୍କୁ ଡରୁଥିଲେ । ଘୃଣା କରୁଥିଲେ । ହେଲେ ରାଣୀ କୁଲେନ୍‌ର ମୁହଁ ଦେଖି, ସଭିଏଁ କିଛି କହୁ ନଥିଲେ ।

ଧିରେ ଧିରେ ନାଗେଶ୍ୱରଙ୍କ ଶତ୍ରୁ ବଢ଼ିଲେ । ଗୋଠରୁ ଗାଈଗୋରୁ କମିଗଲେ । ଘରୁ ଧନ ସମ୍ପତ୍ତି କମିବାରେ ଲାଗିଲେ । ରାଜସ୍ୱ ବୁଡ଼ିଲା । ଗଉଁତିଆମାନେ ମାନିଲେ ନାହିଁ । ଶିରୀ ତୁଟି ଆସିଲା ।

ଗୌଡ଼େଶ୍ୱର ଦେଶର ପଡୋଶୀ ଦେଶ ରାନୀପୁର । ରାଜସ୍ୱ ବଢ଼ାଇବା କିପରି ? ରଜା ଭାବିଲେ, ରାନୀପୁର ଆକ୍ରମଣ କରିବେ । ସେଠିକାର ଧନ ସମ୍ପଦ ଆଣିବେ । ଆଉ ଅଭାବ ରହିବ ନାହିଁ । ସେ ରାନୀପୁର ଆକ୍ରମଣ କଲେ । ସାତଦିନ ସାତରାତି ଘମାଘୋଟ ଲଢ଼େଇ ହେଲା । ଯୁଦ୍ଧରେ ନାଗେଶ୍ୱର ରଜା ମଲେ । କୁଲେନ୍ ରାନୀ ବିଧବା ହେଲେ । ରାଣୀ ଭାବିଲେ, ରଜା ନୀତିଧର୍ମ ନମାନିବାରୁ ସିନା ଏପରି ହେଲା ।

ରଜା ମରିଗଲେ । ଏଣେ କୁଲେନ୍ ରାଣୀ ଗର୍ଭବତୀ । ସେ ଚଣ୍ଡୀ ସମଲାଇଙ୍କୁ ପ୍ରାର୍ଥନା କଲେ । କହିଲେ, ମା' ମୋ ସ୍ୱାମୀତ ମଲେ । ମୋ ବଂଶରକ୍ଷା କର । ମୋ ଦୁଃଖ ବୁଝ । ତୁଇ ତ ମୋ ସାହା ଭରସା । ଏମିତି ଦୁଃଖରେ ସେ ଦିନ କାଟୁଥାନ୍ତି ।

ଦଶମାସ ପୂରିଲା । ରାଣୀ ପୁଅଟିଏ ଜନ୍ମ ଦେଲେ । ସେ ଭାବିଲେ ସ୍ୱାମୀତ ମରିଗଲେ । ଏଣେ ତାଙ୍କ ସ୍ୱାମୀଙ୍କ ମୃତ୍ୟୁପରେ ପୁଅଟିଏ ହୋଇଛି । ଲୋକେ କହିବେ କଣ ? ତେଣୁ ସେ ପୁଅଟିକୁ ଖତଗଦାରେ ପୋତିଦେଲେ

ଦେବୀ ସମଲାଇ ଭାବିଲେ, ଏଇରାଣୀ ବଂଶରକ୍ଷା ପାଇଁ ମୋତେ ପୁଅ ମାଗୁଥିଲା । ପୁଅ ଦେଲି । ଏବେ ମାନମହତ ଭୟରେ ଏମିତି କଲା ? ପାଇଲା ପୁଅକୁ ଖତଗଦାରେ ଲୁଚାଇ ନେଲା ? ଦେବୀ ଭାବିଲେ, ରାଣୀ କେତେ ଉପାସବାର ନକରିଛି । ତାକୁ କେତେ ପୂଜା ଅରଚନା ନକରିଛି । ତାକୁ ଭୁଲିବେ କିପରି ? ଦେବୀ ସେଇଠୁ ପୁଅଟିକୁ ଖତଗଦାରୁ କାଢ଼ିଲେ । ଧୋଇ ଧାଇ ଆଣିଲେ । ରାଣୀକୁ କହିଲେ, ତୋ ପୁଅ ମୋଠାରେ

ରହିଲା । ତୁ ରାଜ୍ୟ ରକ୍ଷା କର । ମୁଁ ତୋ ପୁଅକୁ ପୋଷିବି । ଶତ୍ରୁ ବି ତାର କିଛି କରିପାରିବ ନାହିଁ ।

ଚଣ୍ଡୀ ସମଲାଇଠାରେ ପିଲାଟି ବାରବାର ଚବିଶି ବର୍ଷ ରହିଲା । ସେଇଠି ସେ ପଢ଼ିଲା । ବିଦ୍ୟା ଅର୍ଜନ କଲା । କୁଳବୃତ୍ତି ବି ଶିଖିଲା । ଖଣ୍ଡା, ଧନୁଶର ଚଳାଇ ଶିଖିଲା । ଜଣେ ବଡ଼ ବୀର ହେଲା । ମାଲଯୁଦ୍ଧରେ ସଭିଙ୍କୁ ଜିଣିଲା । ଦେବୀ ତାକୁ ସ୍ନେହ କରୁଥିଲେ । ସେ ବୀର କ୍ଷତ୍ରିୟ ବଂଶର । ଏଣୁ ଦେବୀ ତାକୁ ଖରତମାଲ୍(କ୍ଷତ୍ରିୟମଲ୍ଲ) ନାଁ ଦେଇଥିଲେ ।

ପିଲାଦିନୁ ହିଁ ଖରତମାଲ ବୀରପଣ ଜଣାପଡୁଥିଲା । କେନ୍ଦୁଗଛ ହଲାଇଦେଲେ ଫଳ ଝଡ଼ି ପଡୁଥିଲା । ଅମାନିଆ ଷଣ୍ଢକୁ କିଏ ମଣ କରିପାରେ ? ଖରତମାଲ ଷଣ୍ଢର ଶିଙ୍ଗଧରି ତାକୁ ତଳେ ପକାଇ ଦେଉଥିଲା । ମାଲଯୁଦ୍ଧରେ ବହୁ ମାଲକୁ ଜିଣିଥିଲା । ଚବିଶି ଘନାର ଲୁହା ମୁଦ୍‌ଗର ଦୁଇ ହାତରେ ବୁଲାଉଥିଲା ।

ଚବିଶି ବର୍ଷ ପୂରିଲାପରେ ଦେବୀ ତାକୁ କହିଲେ, ଏବେ ତୋ ରାଜ୍ୟରେ ତୁ ରଜା ହେବୁ । ମାଁକୁ ପାଇବୁ । ଖରତମାଲ ଘରକୁ ସନ୍ଧ୍ୟାରେ ଫେରିଲା ବେଳେ ସାଙ୍ଗରେ ଆଣିଥିଲା ବାର ଗୋଠିଆଳି ଗାଈ । ତା କୁରମେଲ ଷଣ୍ଢ ମହାବଳୀ । ଅଇଟିଆ ଗଡରା(ମେଣ୍ଢା) ର ଅଦ୍ଭୁତ ଶକ୍ତି । ଦେବୀ ତାକୁ କହିଥିଲେ, ଏହି ଗାଈଗୋରୁ ତୋର ଧନଜନ ସବୁ କିଛି ।

ଖରତମାଲ ଘରକୁ ଫେରିଲା । ଗାଈଗୋରୁଙ୍କ ଖୁରାର ଧୂଳିରେ ସୂର୍ଯ୍ୟ ବି ଢାଙ୍କି ହୋଇଗଲେ । ଘଣ୍ଟି ଘାଗୁଡ଼ି ଶବଦରେ କାନ ଫାଟି ପଡ଼ିଲା । ଲୋକେ ଭାବିଲେ, କେହି ଶତ୍ରୁ ଆକ୍ରମଣ କଲା କି ?



ଖରତମାଲ ରାଣୀ ପାଖରେ ପହଞ୍ଚିଲା । ନିଜର ପରିଚୟ ଦେଲା । ରାଣୀ ପୁଅକୁ ପାଇ ଖୁସି । ରାଣୀ କହିଲେ, ବାବୁରେ, ତୋ ବାପା ଧର୍ମ କର୍ମ ମାନିଲା ନାହିଁ । ସବୁ ବେଳେ ମଦ ପିଇଲେ । ଘରର ଦେବୀ ଦେବତାଙ୍କୁ ବି ଦୀପଟିଏ ଜାଳିଲେ ନାହିଁ । ଏଣୁ ଆମର ଏଇ ଅବସ୍ଥା । ଏବେ ତୁ ମୋ କୋଳକୁ ଫେରି ଆସିଛୁ । ମୋ ଦୁଃଖର ଦିନ ଗଲା ।



ସାରା ରାଇଜର ଲୋକ ଜାଣିଲେ, ରାଣୀର ପୁଅଟିଏ ଅଛି । ଦେବୀ ତାକୁ ଘଣ୍ଟ ଘୋଡ଼େଇ ରଖିଥିଲେ । ବିଦ୍ୟା ଅର୍ଜିଛି । ଶାସ୍ତ୍ରରେ ପଣ୍ଡିତ ଆଉ ଶସ୍ତ୍ରରେ ବୀର । ପିଲା ଦେହରେ ରାଜକଳା ଅଛି । ପାଟମାଝୀ, ଗଉନ୍ତିଆ, ଉମରା, ମକଦ୍ଦମ, ଜାନି, ଝାକର ସଭିଏଁ ସଭା କଲେ । ଖରତମାଲକୁ ରଜା ବୋଲି ଘୋଷଣା କଲେ । ପାଟଶାଢ଼ୀ ବାନ୍ଧିଲେ । ସିଂହାସନରେ ବସାଇଲେ । ରାଜ୍ୟରେ ମହା ଆନନ୍ଦରେ ଉତ୍ସବ କଲେ ।

ରାଣୀ ଦେଖିଲେ, ଖରତମାଲର ବିଚକ୍ଷଣ ବୁଦ୍ଧି ଅଛି । ଶାସନ କରିବାରେ ଦକ୍ଷତା ଅଛି । ଲୋକଙ୍କ ହାନି ଲାଭ, ସୁଖ ଦୁଃଖରେ ଭାଗ ନେଉଛି । ଲୋକଙ୍କୁ ନ୍ୟାୟ ଦେଉଛି । ଗରିବଙ୍କୁ ସାହାଯ୍ୟ କରୁଛି । ଲୋକେ କହିଲେ, ମାଁର ଗୁଣ ଆଣିଛି, ଦେବୀର କୃପାରେ ବଳ ପାଇଛି । ନାଁ କରିବ ।

ଖରତମାଲ ରାଜା ହେଲେ ବି ଗାଈ ଗୋରୁର ଯତ୍ନ ନିଏ । ମୁହଁ ଦେଖି ଜାଣିଯାଏ କେଉଁ ଗାଈର କି ଅସୁବିଧା ହୋଇଛି । ତାର ବାର ଗୋଠିଆଳି ଗାଈ । ରହିବା ପାଇଁ ବଡ଼ ବଡ଼ 'ଗୋଠ' କରାଇଲା । ସେମାନଙ୍କ ଯତ୍ନ ପାଇଁ ସାତଜଣ ହଳିଆ ରହିଲା । ସେମାନଙ୍କ ନାଁ, ଚୁଲ୍‌ଚୁଲିଆ, ବିଜାନଙ୍ଗରିଆ, ତ୍ରିବେନା, ଜଟାବେନା, ଲମରୁ, ମନ୍ଦଭଡୁଆ ଓ ଦଁତଗିଜରୁ । ଏମାନେ ସମସ୍ତେ ଜଣେ ଜଣେ ବୀର ।

ଗୌଡ଼େଶ୍ୱର ରାଜ୍ୟକୁ ଲାଗି ଚମ୍ପାପୁର ରାଜ୍ୟ । ସେ ରାଜ୍ୟର ମନ୍ତ୍ରୀ ବଡ଼ ଦୁଷ୍ଟ । ଚୁଗୁଲିଆ । ତା ନାଁ ଅସରଲିଆ । ଖରତମାଲର ଯଶ ସେ ଶୁଣିଥାଏ । ତାକୁ ହରାଇଲେ ଯାଇ ଆମ ରଜାର ନା ହେବ । ଏହା ଭାବି ସେ ରଜାକୁ କହିଲା, 'ହଜୁର, ପଡ଼ୋଶୀ ରାଜ୍ୟ ଆମକୁ ଆକ୍ରମଣ କରିଦେବ । ତା ପୂର୍ବରୁ ଆମେ ତାକୁ ଆକ୍ରମଣ କରିବା । ତାକୁ ଯୁଦ୍ଧରେ ହରାଇଲେ ତାର ବାର ଗୋଠିଆଳି ଗାଈ ଆମ ହାତକୁ ଚାଲିଆସିବ ।' ରଜା ହଁ ଭରିଲେ ।

ଅସରଲିଆ ସାଙ୍ଗେ ସାଙ୍ଗେ ସୈନ୍ୟ ସାମନ୍ତ ଏକାଠି କଲା । ଗୌଡ଼େଶ୍ୱର ରାଜ୍ୟକୁ ସୈନ୍ୟ ଖେଦିଗଲେ । ସେଇଠି ଶିବିର ପକାଇଲେ । ଖରତମାଲ ଏହା ଜାଣି ନଥାଏ । ଏଣେ ହଜାର ହଜାର ସୈନ୍ୟ ମାଡ଼ି ଆସୁଛନ୍ତି । ଖରତମାଲ ସାଥୀମାନଙ୍କୁ ଡାକିଲା, କହିଲା, ସୈନ୍ୟ ଶିବିର ପାଖରେ ଯେତେ ପୋଖରୀ ଅଛି, ସେଇଠି ଗାଈଗୋରୁଙ୍କୁ ଛାଡ଼ିଦିଅ । ସେମାନେ ପୋଖରୀର ପାଣି ପିଇ ଶେଷ କରି ଦିଅନ୍ତୁ । ଶତ୍ରୁମାନଙ୍କୁ ପାଣି ଟୋପେ ବି ମିଳିବ ନାହିଁ ।

ସେଇଠୁ ଖରତମାଲର ସାତବୀର ଉଠିଲେ । ଗାଈଗୋରୁ ଧରି ଶିବିର ପାଖରେ ପହଞ୍ଚିଲେ । ପୋଖରୀର ସବୁ ପାଣି ଗାଈଗୋରୁ ପିଇଦେଲେ । ଏଣେ ସୈନ୍ୟମାନେ ପିଇବାକୁ ପାଣି ଫୁଟେ ବି ନାହିଁ । ରାନ୍ଧିବେ କିପରି ? ଝାଡ଼ା ଯିବେ କିପରି ? ଦିନ ଦୁଇଟାରେ ସେମାନେ ହଇରାଣ ହୋଇଗଲେ । ସେମାନେ ଶିବିର ଉଠାଇ ଖରତମାଲର ରାଜଧାନୀ ଆଡକୁ ମୁହାଁଇଲେ । ହେଲେ ବାର ଗୋଠିଆଳି ଗାଈ ସୈନ୍ୟମାନଙ୍କୁ ଛେକି ଦେଲେ । ଆଡଗନ୍ଦା ଛେକା । ସୈନ୍ୟମାନେ ଆଗେଇବେ କ'ଣ ? ପଛକୁ ଫେରିଲେ । ଏଣେ କୁରମେଲ ଷଣ୍ଢ ଆଉ ଅଲଟିଆ ଗଡରା ସୈନ୍ୟମାନଙ୍କୁ ମାଇଲେ ଭୁଷିଯେ, କାହାର ପେଟକଣା, ତ କାହାର ମୁହଁ ଫାଟିଲାଣି । ସୈନ୍ୟମାନେ ଅସମ୍ଭାଳ ହେଲେ । ଚମ୍ପାସୁର ରାଜ୍ୟକୁ ଫେରିଲେ । ହେଲେ ଷଣ୍ଢ ଓ ଗାଈଗୋରୁ ଛାଡ଼ିଲେ କି ? ସେମାନେ ଗୋଡ଼େଇଲେ ଚମ୍ପାସୁର ସୈନ୍ୟଙ୍କୁ । ସେଇ ରାଜ୍ୟରେ ଦେଖିଲେ ଫସଲ ଛନଛନିଆ ହୋଇଛି । ଧାନ ସବୁ ଲସଲସିଆ ହୋଇଛି ।

ଗାଈଗୋରୁଙ୍କ ତ ସୁଯୋଗ ମିଳିଗଲା । ବିଜାନଗରିଆ ଦେଖୁଥାଏ । ସେ ଆନନ୍ଦରେ ଗାଇଲା :-

**''ଆଜି ତୋ ହୋ ଲୀଲାରେ ମୋର,**
**ଚମ୍ପାସୁର ରାଇକେ ପାନେ ଚଖାଇ ଦେଲାନା ଯେ,**
**ମୋର କୁରମେଲ ଷଣ୍ଢ, ଅଲଟିଆ ଗଡରାଯେ,**
**ମୋର ମାର ଗୋଠିଆଲି ଗାଈ ମନେ ଯେ,**
**ଯେତେ ଧାନ ଚଉଳକେ ଯେ ଖୁଆଇ ଦେଲାନା ଯେ,**
**ଏ ବାବୁ, କେନ ରାଏଜର ଗୋରୁ ଆଏଲାନା ଯେ ସତେ ଗା...**
**ତାର ବାରବରଷର ଧାନକେ ଗାଁଡ଼ମୁଁଡ଼ କରିଦେଲାନା ଯେ**
**ବଲି ଚମ୍ପାସୁର ରଜା ବୁଲୁଛେନା ଯେ ''..**

ଗାଈଗୋରୁ ମନଇଚ୍ଛା ଫସଲ ଚୁରକରି ହଲି ହଲି ଫେରିଲେ । ଚମ୍ପାସୁର ରାଇଜରେ ଫସଲର ମରୁଡ଼ି ପଡ଼ିଗଲା

ଖରତମାଲ ଜାଣିଲା, ତା କୁରମେଲ ଷଣ୍ଢ ଜଗତଜିତା । ପାନେ ଦେଇଛି ଚମ୍ପାସୁର ରାଜ୍ୟର ସୈନ୍ୟଙ୍କୁ ଗୌଡ଼େଶ୍ୱର ଲୋକ ଭାରି ଖୁସି । ଖରତମାଲ ରଜା ହେଲା । ତାଙ୍କ ରାଜ୍ୟର ମାନ ଇଜ୍ଜତ ବଢ଼ିଲା ।

\+ + + + +



ଅସରଲିଆ ମନ୍ତ୍ରୀ ରଜା ପାଖରେ ପହଞ୍ଚିଲା । କହିଲା, ରାଜା, ଖରତମାଲର ଗାଈଗୋରୁ ଆମ ସୈନ୍ୟମାନଙ୍କୁ ମାରି ଖେଦି ଦେଲେ । ଆମ ଫସଲ ଖାଇଗଲେ । ତା' ସୈନ୍ୟବଳ ବି ଅଧିକ । ସମସ୍ତେ ଖରତମାଲ ଯୋଗୁଁ ଶକ୍ତିଶାଳୀ । ଏଣୁ ଆମେ ଖରତମାଲକୁ ବାନ୍ଧି ଆଣିବା । ତେବେ ଯାଇ ତାର ସୈନ୍ୟବଳଙ୍କ ବୁଦ୍ଧି ହଜିବ । ବଳ କମିବ । ରାଜା କହିଲେ, ତା ଗାଈଗୋରୁ ପାଖରେ ଆମ ସୈନ୍ୟ ସରି ନୁହେଁ । ଆଉ କୋଉ ସାହସରେ ତାକୁ ବାନ୍ଧି ଆଣିବା କହୁଛ ? ତାକୁ ବାନ୍ଧି ଆଣିବା ଯାହା, ସ୍ୱର୍ଗକୁ ସିଡ଼ି ଲଗାଇବା ତାହା ।

ଅସରଲିଆ ମନ୍ତ୍ରୀ କହିଲା, ସେଇଟା ମୋ ଉପରେ ଛାଡ଼ି ଦିଅନ୍ତୁ ମଣିମା । ମୁଁ ଯମିତି ବି ହଉ ତାକୁ ବାନ୍ଧି ଆଣିବି । ଆପଣଙ୍କ ପାଦତଳେ ପକାଇବି । ନୋହିଲେ ମୋ ନାଁ ଅସରଲିଆ ମନ୍ତ୍ରୀ ନୁହେଁ ।

\+ \+ \+ \+ \+

ସେଇଠୁ ଅସରଲିଆ ମନ୍ତ୍ରୀ ଗୌଡ଼େଶ୍ୱର ରାଜ୍ୟକୁ ଗଲା । ଦରବାର ବସିଛି । ରାଣୀ ବସିଛନ୍ତି ଖରତମାଲ ବସିଛି । ପାତ୍ର ମନ୍ତ୍ରୀ ସଭିଏଁ ଅଛନ୍ତି । ତ୍ରିବେନା, ବିଜାନଗରିଆ ସମସ୍ତେ ବସିଛନ୍ତି ।

ଅସରଲିଆ ପ୍ରଥମେ ରାଣୀକୁ ପ୍ରଣାମ କଲା । କହିଲା, ଧନ୍ୟ ତୁମେ ରାଣୀ, ତୁମ ପୁଅ ସାରା ପୃଥିବୀରେ ଯଶ ଅର୍ଜନ କରିଛି । ତାକୁ ଅତିଥି କରିବା ପାଇଁ ଆମ ରାଜ୍ୟ ନିମନ୍ତ୍ରଣ ପଠାଇଛନ୍ତି । ଏଣୁ ମୁଁ ଆସିଛି ।

ରାଣୀ କହିଲେ, - ତୁମ ରଜାତ ଆମକୁ ଆକ୍ରମଣ କଲେ । ଆମର ଦୋଷ କ'ଣ ଥିଲା ? ପଡ଼ୋଶୀରାଜା । ଭଲ ସମ୍ପର୍କ କଖିବା କଥା । ତା'ତ କଲ ନାହିଁ । ଆମକୁ ଦୁର୍ବଳ ବୋଲି ଭାବିଲ । ଏବେ ଅତିଥି କରିବାକୁ ମନ କାହିଁକି ?

ଅସରଲିଆ ଚତୁର ଲୋକ । ସେ କହିଲା, ରାଣୀମା', ଆମର ରଜା ନିଜ ଭୁଲ ବୁଝି ପାରିଛନ୍ତି । ଏଣୁ ସେ ଭଲ ସମ୍ପର୍କ ରଖିବା ପାଇଁ ଖରତମାଲକୁ ଡାକିଛନ୍ତି । ଆପଣଙ୍କ ପୁଅ ନଗଲେ ଆମ ରଜାଙ୍କ ମନ ଦୁଃଖ ହେବ

ରାଣୀ ନୀରବ ରହିଲେ । ତାଙ୍କ ମନରେ ଭୟ ହେଉଥିଲା । ଖରତମାଲ ମାଁର ମୁହଁକୁ ଚାହିଁଲା । ମାଁ ମନକଥା ବୁଝିପାରିଲା । କହିଲା, ମାଁ ତୋ ଆଶୀର୍ବାଦ ଥିଲେ, ମୋର କିଛି ଅସୁବିଧା ହେବ ନାହିଁ । ମୋର ଇଷ୍ଟ ଦେବୀ ମୋ ସାଙ୍ଗରେ ଅଛନ୍ତି । ରାଜ୍ୟ ଦେବୀ ମାଣିକେଶ୍ୱରୀ ମୋର ଭରସା । ମୋର କେହି କ୍ଷତି କରି ପାରିବେ ନାହିଁ । ତୁ ଚିନ୍ତାକର ନାହିଁ । ସେଇଠୁ ରାଣୀ ହଁ କଲେ ।

ଖରତମାଲ ଭାବିଲା, ତାକୁ ଚମ୍ପାସୁର ରାଜା ଡାକିଛି । ଏଣୁ ଅସ୍ତ୍ରଶସ୍ତ୍ର ନେବା ଠିକ୍ ନୁହେଁ, ସେ ଅସରଲିଆ ମନ୍ତ୍ରୀ ସଙ୍ଗରେ ବାହାରିଲା । ବାଟସାରା ଅସରଲିଆ ଖରତମାଲର ପ୍ରଶଂସା କରି ଯାଉଥାଏ । ସେ ବଡ଼ ଖୁସି ଜଣା ପଡୁଥିଲା ।

\+ \+ \+ \+ \+

ଅସରଲିଆ ଖରତମାଲକୁ ଧରି ଚମ୍ପାସୁର ରାଜା ପାଖରେ ପହଞ୍ଚିଲା । ରାଜା ଖରତମାଲକୁ ଦେଖି କୁଟିଳ ହସଟିଏ ହସିଲା । କହିଲା, ତୁ ମୋର ସୈନ୍ୟମାନଙ୍କୁ ହଇରାଣ କଲୁ । ମୋ ଫସଲ ଗୋରୁ ଖୁଆଇ ଦେଲୁ । ଏବେ ଦେଖିବି କେମିତି ତୁ ରକ୍ଷା ପାଇବୁ ।

ଖରତମାଲ ବୁଝିପାରିଲା, ଅସରଲିଆ କଥାରେ ସେ ଏଠିକି ଆସି ଭୁଲ୍ କଲା । ସେ ଲୋକ ଚିହ୍ନି ପାରିଲା ନାହିଁ । ମାଁର କଥା ମାନିଲା ନାହିଁ । ଏଣେ ଶତ୍ରୁ ହାତରେ ପଡ଼ିଲା ।



ଚମ୍ପାସୁର ରାଜା ଖରତମାଲକୁ ହାତଗୋଡ ବାନ୍ଧି ରଖିଲା । ଅସରଲିଆ କହିଲା, ମଣିମା ହଜୁର, ଖରତମାଲ ହାତରେ ଅସ୍ତ୍ର ଥିଲେ ଆମେ କଣ ତାକୁ ଛୁଇଁ ପାରିଥାନ୍ତେ ? ଏଣୁ ଏଇଟା ହିଁ ମଉକା ତାକୁ ଶେଷ କରିଦେବା । ତାକୁ ଏମିତି ମାରିବା ନାହିଁ । ତାକୁ ପଥର ଘରେ ବାନ୍ଧି ପକାଇ ଦେବା । ନଖାଇ ନପିଇ ଶୁଖି ଶୁଖି ମରିଯିବ ।

ଖରତମାଲ ରାଗରେ ଓଠ କାମୁଡ଼ି ଦେଲା । କହିଲା, ବିଶ୍ୱାସଘାତକ, ତମେ ସବୁ ମଣିଷ ନୁହଁ, ପଶୁ । ମୋତେ କପଟରେ ଡାକିଆଣି ମାରିଦେବାକୁ ବସିଛ । ତମର ଦିନ ଶେଷ ହୋଇ ଆସୁଛି । ଦୁନିଆରେ ସତ୍ୟ ଧର୍ମ ଥିଲେ ତମେ ନିଶ୍ଚେ ଦଣ୍ଡ ପାଇବ । ତମର ଏ ଗର୍ବ ନିଶ୍ଚୟ ଖର୍ବ ହେବ ।

ଅସରଲିଆ କହିଲା, ବାବୁ ଖରତମାଲ, ତୋ ପରେ ତୋ ରାଜ୍ୟ ଆମ ରାଜ୍ୟ ଅଧିନରେ ରହିବ । ରାଜନୀତିରେ ଧର୍ମ ଅଧର୍ମ କ'ଣ ? ଯାହାର ବଳ, ବୁଦ୍ଧିବଳ କୌଶଳ, ତା'ରି ରାଜ୍ୟ ।

ଖରତମାଲ ଇଷ୍ଟଦେବୀ ଚଣ୍ଡୀ ସମଲାଇଙ୍କୁ ସୁମରଣା କଲା । କହିଲା, ମାଁ ତୋ ପୁଅକୁ ଏହି ଅସୁର ନୀଚଲୋକମାନେ ପରାଣ ନେବାକୁ ବସିଛନ୍ତି । ତୁ ସାହା ନହେଲେ ମୋ ଜୀବନ ଗଲା । ମୋ ଦୁଃଖ ଲାଗି ଚିନ୍ତା ନାହିଁ । ମା' ମୋର କେଡେ ଦୁଃଖରେ ଥିବେ ।



ସେଇଠୁ ଅସରଲିଆ ତା ସୈନ୍ୟମାନଙ୍କୁ ଡାକିଲା । ବଡ଼ ବଡ଼ ପଥର ଆଣି ପଥର ଘରଟିଏ ତିଆରି କଲା । ପଥର ଘର ମଝିରେ ଖରତମାଲକୁ ଠିଆ କରାଇଲା । ପଥର ଘର ଅମୁହାଁ । ବାଟ ନାହିଁ । କେବଳ ଗୋଟିଏ ହିଁ କଣା ଥାଏ । ତା ଭିତରେ ଖରତମାଲ ଠିଆ ହୋଇଥାଏ । ହାତ ଗୋଡ ବନ୍ଧା । ଅନ୍ନ ପାଣି ନାହିଁ ।

ସେଠୁ ଅସରଲିଆ ଦୂତ ପଠାଇଲା ରାଣୀ କୁଲେନ୍ ପାଖକୁ । ଦୂତ ରାଣୀଙ୍କୁ କହିଲା, ତମର ଖରତମାଲ ଆମ ରଜା ପାଖରେ ବନ୍ଧନରେ ପଡ଼ିଛନ୍ତି । ଆମର ଯେତେ ଧନ ସମ୍ପତ୍ତି ତମର ଗାଈଗୋରୁ ଖାଇଲେ । ଆମକୁ ସେତିକି ଧନ ଫେରାଇବ । ତେବେଯାଇ ଖରତମାଲକୁ ତମେ ଫେରି ପାଇବ । ଏତିକି କହି ଦୂତ ଫେରିଗଲା ।

ରାଣୀ ଏହାଶୁଣି ମୁଣ୍ଡରେ ହାତ ଦେଲେ । ରୋଏ ରୋଦନ ହୋଇ କାନ୍ଦିଲେ । ଗୋଠର ଭଗୁଆଲମାନଙ୍କୁ ଡାକି କାନ୍ଦିକାନ୍ଦି କହିଲେ,

''-ଆରେ ଶୁନରେ ବାବୁ ଭଗୁଆଲ ମନେ ଗା,
ମୋର ଚବିଶ ବରଷର ପିଲା ଖରତମାଲ ଯେ,
ଚମ୍ପାସୁର ରାଜା ଠାନେ ବନ୍ଧନେ ପଡ଼ିଛେ ଯେ,
ମୋର ହୁରୁଦ ଫାଟି ଯାଉଛେ ବାବୁରେ
ଆରେ ଯାହାନାରେ ଭଗୁଆଲ ମନେ..
ମୋର ଖରତମାଲ୍ କେ ବାବୁ ଧରିଆନ ଛନେରେ..
ଇରି...ରି.......ରି.....
ଯଦି ସତେ ଅଛ ବେଲେ ମା ଚଣ୍ଡି ସମଲାଇ
ଝାର ବରଲା ଯେ,
ମୋର ଖରତମାଲର ବାଲ ବି ବଙ୍କା ନାଇ କରିପାରେ କେହି ଯେ....''



ରାଣୀଙ୍କ ବାହୁନା ଶୁଣି ତ୍ରିବେନା, ଝଟାବେନା ପ୍ରଭୃତି ସପ୍ତରଥୀ ଫୁଙ୍କିଲେ ତାଙ୍କର ବାଂଶ । ବାଂଶର ଶଂଖ ଧ୍ୱନିରେ ବାର ଗୋଠିଆଳି ଗାଈ ରୁଁ ରୁଁ ସୁଁ ସୁଁ କରି ଲାଞ୍ଜଟେକି ଆଖି ତରାଟି ସପ୍ତରଥୀ ପାଖରେ ଠିଆ ହେଲେ । ସପ୍ତରଥୀ ବାଂଶ ବଜାଇ ଗାଇଲେ -

''ଚାଲରେ ମୋର ଗୁଣ୍ଡି ବୋଲି, କାଲି କଳସି ଲେଞ୍ଜ

ଚାଏଁରୀ ମୁଡ଼ି, ମୋ ଭୁଣ୍ଡି ଗାଈରେ

ଲାଗିଛେ ମୋର କୁରମେଲ ଷଣ୍ଢ,

ଲାଗିଛେ ମୋର ଅଲଟିଆ ଗଡରା

ତିନି ଚାରି କୋଣକେ ଶବଦ ଯାଉଛେ ଦଦାରେ...

ଇରି ରିରି....ହୋ....ରେ ରେ ରେ ...''

ସେଇଠୁ ସପ୍ତରଥି ସଜବାଜ ହେଲେ ଚମ୍ପାସୁର ରାଜ୍ୟ ଆକ୍ରମଣ କରିବା ପାଇଁ । ରାଣୀ କୁଲେନ୍ କହିଲେ, ଅସରଲିଆ ମନ୍ତ୍ରୀ ମୋର ପୁଅକୁ ଡାକି ଆସିଥିଲା । ତାକୁ ହିଁ ଧରି ମୋର ପୁଅର ଖବର ବୁଝିବ । ଆଉ ତାକୁ ଶେଷରେ ମାରିବ । ନୋହିଲେ ମୋ ପୁଅର ଖରବ କିଏ ତମକୁ ଦେବ ।

ତ୍ରିବେନା, ଝଟାବେନା, ଚୁଲଚୁଲିଆ, କୋତରାବାଏନା ପ୍ରଭୃତି ବୀର ସଜବାଜ ହେଲେ ।

''ସେନୁ ତ ଭାଗୁଥାଇ ମନେ ବାରବାର ଚବିଶଗନାର ଲୁହାକେ ଠେଙ୍ଗା ବନେଇଛେ ନା ଗା,

ବୁହି କରିତ ଚାଲିଯାଉଛେ

ଇ ଖୋଲି ପାଁଚଶ କେନ୍ ଖୋଲି ସାତଶ

ସୁଁ ସାଁ ଭୁଁ ଭାଁ କରି ଖୋ ଏଲେ ଖୋଏଲ ବୁଲିଯାଉଛେ ଯେ ''

ଆଜିତ ମୁଇଁ ଚମ୍ପାସୁର ରାଜକେ

ଧୁଇଲ୍ ଚଟାବି ବଲୁଛେନା ଯେ,

ଅସରଲିଆ ମନ୍ତ୍ରୀ କେ ଯଦି ଗେଲପି

ଉଧରେଇ ନେଇ ଦିଛେଁ, ତେବେ କେଁ

ମୋର ନାଁ ତ୍ରିବେନା ବଲି କହୁଛେ ନା ଯେ -''

ସେଇଠୁ ଖରତମାଲ ବୀରର ଗାଈଗୋରୁ ସଜହେଲେ । ସମସ୍ତେ ବାହାରିଲେ ଚମ୍ପାସୁର ରାଜ୍ୟକୁ

ଯୁଦ୍ଧକରିବା ପାଇଁ । ପ୍ରଥମେ କୁରମେଲ ଷଣ୍ଢର ଦଳ । ତାପରେ ଅଲଟିଆ ଗଡରା । ଶେଷକୁ ଖରତମାଲର ସପ୍ତରଥି ଓ ସୈନ୍ୟଦଳ ଖେଦିଗଲେ ଚମ୍ପାସୁର ରାଜ୍ୟକୁ ।

''ମୋର କୁରମେଲ ଷଣ୍ଢ ହୁଁକାର ଦଉଛେ
ତିନ୍‌କୋଶକେ ଶବଦ ଯାଉଛେ ନାଯେ,
ମୋର ଅଲଟିଆ ଗଡରା ଜଂଗ ଏଡେ
ଫେଁ ଡରି ଏଡେ ଗଛମାନକେ ମାରି ଦଉଛେ ଯେ,
ଠୁସା ଠୁସା ଗନ୍ଦା ଗନ୍ଦା କରି ଢୁଲି ଯାଇଛେ ନାଯେ ।''

ଖରତମାଲର ସୈନ୍ୟଦଳ ଚମ୍ପାସୁର ରାଜ୍ୟରେ ପହଞ୍ଚିଲେ । ଆଗରୁ ତ ଚମ୍ପାସୁର ସୈନ୍ୟମାନେ କୁରମେଲ ଷଣ୍ଢଠାରୁ ମାଡ଼ ଖାଇଥିଲେ । ଏବେ ବି ମାଡ଼ଖାଇ ଖଁଡିଆ ଡଁଣିଆ ହେଲେ । ଆଉ ରଜା ସେନାପତି କଥା ମାନିବେ କ'ଣ । ଭୟରେ ଯିଏ ଯୁଆଡେ ପଳେଇଲେ । ସେଠୁ ତ୍ରିବେନା, ଜଟାବେନା, ରାଇ ନବର ଆଡକୁ ମାଡ଼ି ଚାଲିଲେ । ରଜା ଯାଇ ଲୁଚିଥିଲା ରାଣୀ ନବରରେ । ସେଠି ରାଜାକୁ ବନ୍ଦୀ କଲେ । ରାଜ କହିଲା, ମୋର କିଛି ଦୋଷ ନାହିଁ । ମୁଁ ଖରତମାଲକୁ ମାରିବାକୁ ଚାହିଁ ନଥିଲି । ସବୁ ବୁଦ୍ଧି ସେଇ ଚୁଗୁଲିଆ ଅସରଲିଆର



ତ୍ରିବେନା କହିଲା -''ତୋ କଥାରେ ବିଶ୍ୱାସ ନାହିଁ । ତୁ ରଜାର ଧର୍ମ ଜାଣିନାହୁଁ । ଜାଣିଥିଲେ ଅତିଥି ବୋଲି ଡାକି ଆଣି ତାକୁ ବନ୍ଦୀ କରି ନଥାନ୍ତୁ । ତୁ ତୋର ଧର୍ମ ନାଶ କଲୁ । ଏତିକି ଜାଣିଲୁ ନାହିଁ ରଜା ଭୁଲ୍ କଲେ ପ୍ରଜା ଦୁଃଖ ପାଏ । ତୋତେ କ୍ଷମା ନାହିଁ । ଆମ ରାଣୀ କୁଲେନ୍ ତୋର ନ୍ୟାୟ ବିଚାର କରିବେ ।'' ସେମାନେ ରାଜର

ହାତଗୋଡ଼ରେ ଶିକୁଳି ଲଗାଇ ବାନ୍ଧିଲେ । ସେଇଠୁ ଖୋଜିଲେ ଅସରଲିଆ ମନ୍ତ୍ରୀକୁ । ତା ପାଇଁ ଦୁଇ ରାଜ୍ୟ ଭିତରେ ଲଢ଼େଇ ହେଲା । ତାକୁ ନ ଧରିଲେ ଖରତମାଲର ଖବର ଦେବ କିଏ ? ସବୁ ସୈନ୍ୟ ଖୋଜିଲେ ଅସରଲିଆକୁ । ମନ୍ତ୍ରୀଘରେ, ରଜାଘରେ, ଦରବାର, ଘୋଡାଶାଳ, କେଉଁଠି ବି ନାହିଁ । କାହିଁଗଲା ତେବେ ଅସରଲିଆ ?

ତ୍ରିବେନା କହିଲା, ସିଏ ଚାଲାକ ଲୋକ । ଦୁର୍ବୁଦ୍ଧିଆ । କେଉଁଠି ଖସି ପଳାଇବ ଯେ ଜଣା ପଡ଼ିବ ନାହିଁ ତାକୁ ଖୋଜିବା ସହଜ ନୁହେଁ ।

ସେଇଠୁ ତ୍ରିବେନା ସବୁ ସୈନ୍ୟଙ୍କୁ କହିଲା, ପୁରୁଷ କିମ୍ବା ସ୍ତ୍ରୀ ସମସ୍ତଙ୍କୁ ଜଗ । କେହି ଯିମିତି ନଗର ଭିତରୁ ନବାହାରନ୍ତି । ସମସ୍ତଙ୍କୁ ଜଗିରହ । କେହି ଯିମିତି ନଗର ଭିତରୁ ନବାହାରନ୍ତି । ସମସ୍ତଙ୍କୁ ଜଗିରହ । ସେଇଠୁ ତ୍ରିବେନା ଓ ଜଟାବେନା ପଶିଲେ ଘରକୁ ଘର । କୋଠରୀ ଛାଡ଼ି କୋଠରୀ । ସବୁ ଆଡ଼େ ଖୋଜି ଖୋଜି ଥକି ଗଲେ । ହେଲେ ତାକୁ ପାଇଲେ ନାହିଁ । ସେଠୁ ତ୍ରିବେନା କହିଲା, ଆଉକେଉଁ ଜାଗା ଖୋଜିନାହିଁ । ଜଟାବେନା କହିଲା - ସବୁ ଜାଗା ଖୋଜିଲୁଣି ହେଲେ ରାଣୀ ଅନ୍ତଃପୁର ଖୋଜିନାହୁଁ । ହଁ ରାଣୀ ଅନ୍ତଃପୁରରେ ତ ରାଜା ଲୁଚିଥିଲା । ବୋଧହୁଏ ସେଇଠି ହିଁ ଅସରଲିଆ ଲୁଚିଥିବ । ସେଠୁ ଦୁହେଁ ରାଣୀ ମହଲ ଗଲେ । ସେଇଠି ରାଣୀ, ରାଜଜେମା ଓ ଅନ୍ୟାନ୍ୟ ଦାସୀମାନଙ୍କୁ କହିଲେ, ତୁମେ ସବୁ ଚାଲିଆସ । ତୁମ୍ଭମାନଙ୍କୁ ଆମେ କେହି କ୍ଷତି କରିବୁ ନାହିଁ । ରାଣୀ ରାଜକନ୍ୟା ଓ ଦାସୀମାନେ ଜଣ ଜଣ କରି ବାହାରିଲେ । ତ୍ରିବେନା ସମସ୍ତଙ୍କୁ ଜଣ ଜଣ କରି ଦେଖି ଛାଡ଼ି ଦେଉଥାଏ । ଦାସୀମାନେ ଆସିଲାବେଳେ କେହି ଓଢ଼ଣା ଟାଣି ନଥିଲେ, କେବଳ ଜଣକୁ ଛାଡ଼ି । ତ୍ରିବେନା ସେଇ ସ୍ତ୍ରୀ ଲୋକର ଶାଢ଼ୀ ପିନ୍ଧା ଚାଲିବା ରଙ୍ଗଢ଼ଙ୍ଗ ଦେଖିଲା । ସ୍ତ୍ରୀଲୋକପରି ସେ ଶାଢ଼ୀ ଠିକ୍ ପିନ୍ଧି ନାହିଁ । ଚାଲିବା ଢଙ୍ଗ ପୁରୁଷପରି । ହାତେ ଲମ୍ବର ଓଢ଼ଣା ଢାଙ୍କିଛି । ଦାସୀମାନେ ତ ଏମିତି ଓଢ଼ଣା ଟାଣନ୍ତି ନାହିଁ । ତ୍ରିବେନା ତା ଓଢ଼ଣା ମୁଣ୍ଡରୁ ଟାଣି ଦେଲା । ଦେଖିଲା ନାରୀବେଶରେ ଜଣେ ପୁରୁଷ । ନାକତଳେ ବହଳ ନିଶ ।



ତ୍ରିବେନା ତାକୁ ପଚାରିଲା ତୁ କିଏ ? ଏଠି କାହିଁକି ଅଛୁ ?

ସେ କହିଲା -"ମୁଁ ଜଣେ ମାଇଚିଆ । ଦାସୀମାନଙ୍କ ସାଙ୍ଗରେ ଥାଏ । ରାଣୀଙ୍କ ସେବା କରେ । ମୋତେ ଛାଡ଼ିଦିଅ । ମାଇଚିଆ ଯାହା, ନାରୀ ତାହା, ମୋତେ ଛାଡ଼ିଦିଅ ।"

ଜଟାବେନା ତା ଉପରେ କଡ଼ା ନଜର ରଖିଥାଏ ।



ଜଟାବେନା କହିଲା - ଭାଇ ତ୍ରିବେନା, ଇଏ ତ ସେଇ ଲୋକ । ଆମ ଖରତମାଲକୁ ନିମନ୍ତ୍ରଣ ଦେବାକୁ ଯାଇଥିଲା । ତ୍ରିବେନା ଯେମିତି ଜାଣିଲା ଇଏ ଅସରଲିଆ ମନ୍ତ୍ରୀ, ତାକୁ ମାରିଲା ଶକ୍ତ ଦିଚାପୁଡ଼ା ତା ଗାଲରେ ଯେ, ସେ ସେଇଠି ଡ଼ାଇ କରି ଘୁରମୁସିଖାଇ ତଳେ ପଡ଼ିଗଲା । ତାକୁ ଉଠାଇ ତ୍ରିବେନା କହିଲା, ଖରତମାଲ କେଉଁଠି ଅଛି କହ, ନୋହିଲେ ତୋତେ ଏଇଠି ଧୂଲିଆ(ବଳି) ଦେବି । ରୁହ, କହୁଛି ବୋଲି ଅସରଲିଆ କହିଲା, ମୁଁ ତ ହୁକୁମର ଚାକର । ରଜା ଚାହିଁଲା ତମ ରାଜ୍ୟକୁ ନିଜ ରାଜ୍ୟରେ ମିଶାଇବ ବୋଲି । ସବୁ ରଜାର ବୁଦ୍ଧି । ମୁଁ ତ ଚାକର । ମୁଁ କିଛି କରିନି । ତମ ଖରତମାଲ ଅମୁହାଁ ପଥର ଘରେ ବନ୍ଦୀ ଅଛି ।

ତ୍ରିବେନା କହିଲା - ''ଜଲ୍ ଦି ସେଇଠିକ ନେଇ ଚାଲ ।

ନୋହିଲେ ତୋ ଆଖି ଦିଟା ଫୁଟେଇ ଦେବି ।''

ଅସରଲିଆ କହିଲା - ''ଖରତମାଲକୁ ଦେଖାଇଦେଲେ ମୋତେ ଛାଡ଼ିଦେବ ?

ମୋତେ ମାରିବ ନାହିଁ ତ ?''

- ନାଁ ।

ସେଠୁ ଖରତମାଲକୁ ବନ୍ଦୀ କରାଯାଇଥିବା ଥାନରେ ପହଞ୍ଚିଲେ ସମସ୍ତେ ।

ରଜାଘର ପଛରେ ଗୋଟିଏ ଅଲଗା ପଥର ଘର ଥାଏ । ଅମୁହାଁ ଘର । ଅସରଲିଆ ସେଇ ଘରକୁ ଦେଖାଇ କହିଲା, ଏଇ ଘର ଭିତରେ ଖରତମାଲ ଅଛି । ଏବେ ମୋତେ ଛାଡ଼ି ଦିଅ ?

ତ୍ରିବେନା କହିଲା - ମନ୍ତ୍ରୀ ହେବ ଆଉ ରଜାଙ୍କୁ ମୁକୁଳାଇବ ନାହିଁ । କିମିତି କଥା ? ଏବେ ତାକୁ ଉଦ୍ଧାର କରିବା ।

ତ୍ରିବେନା ପଥର ଘରକୁ ଦେଖିଲା । କହିଲା - ବାପ୍‌ରେ ବାପ୍ ।

ଏ ଘର କଣ ସହଜରେ ଭାଙ୍ଗିବ ? ଡାକ କୁରମେଲ ଷଣ୍ଢ ଆଉ ଅଲଟିଆ ଗଡରାକୁ ।

ସେଠୁ କୁରମେଲ ଷଣ୍ଢ ଓ ଅଲଟିଆ ଗଡରା ଆସିଲେ । ତ୍ରିବେନା ଷଣ୍ଢ ପିଠିରେ ହାତମାରି କହିଲା, ଭାଇରେ, ଏଠି ଆମ ଭାଇ ଖରତମାଲ ବନ୍ଧନରେ ପଡ଼ିଛି । ତାକୁ ବଞ୍ଚାଅ ।

ସେଇଠୁ କୁରମେଲ ଷଣ୍ଢ ଆଖି ତରାଟିଲା । ଲାଞ୍ଜ ଟେକିଲା । ନିଃଶ୍ୱାସ ନେଲା ଓ ଦେହକୁ ଫୁଲାଇଲା । କିଛି ଦୂର ପଛକୁ ଦଉଡ଼ିଗଲା । ସେଠୁ ଦଉଡି ଦଉଡି ଆସି କାନ୍ଥ ଉପରେ ଭୂଷିଲା ନିଜ ଶଂଗ । ଏଣେ ଅଲଟିଆ ଗଡରା ବି ଡେଇଁ ଡେଇଁ ଆସି ନିଜ ମୁଣ୍ଡରେ ମୁଣ୍ଡିଆ ମାରି କାନ୍ଥକୁ ଭାଙ୍ଗିଲା । ପଥର ଘରର ସବୁ ପଥର ଗୋଟି ଗୋଟି ହୋଇ ଭୁଷୁଡି ପଡ଼ିଲା । ସେମାନେ ପଥର ଗଦା ଭିତରୁ ଖରତମାଲକୁ ଉଦ୍ଧାର କଲେ ।

ଖରତମାଲ କହିଲା, ସବୁ ନାଟର ଗୋବର୍ଦ୍ଧନ ଏଇ ଅସରଲିଆ । ତାକୁ ସେଇଠି ଶୂଳି ଦିଆଗଲା । ଖରତମାଲ କହିଲା ମୋ ପାଇଁ ପଥର ଘର ତିଆରି କରିଥିଲୁ । ଏଇଠି ତୁ ସଜା ପାଆ ଅସରଲିଆ ସେଇଠି ମଲା ।

ଚମ୍ପାସୁର ରାଜକୁ ବନ୍ଦୀକରି ସମସ୍ତେ ଗୌଡେଶ୍ୱର ରାଜ୍ୟକୁ ଆଣିଲେ । ରାଣୀ କୁଲେନ୍ ଖରତମାଲକୁ ଦେଖି ଖୁସିରେ କାନ୍ଦି ପକାଇଲେ । ପ୍ରଜା, ଗାଈଗୋରୁ ସମସ୍ତେ ଖୁସିରେ ଆନନ୍ଦ ଉତ୍ସବ କଲେ ।

\+ \+ \+ \+ \+

ଗୌଡେଶ୍ୱର ରାଜ୍ୟର ଦରବାର । ରାଣୀ କୁଲେନ୍ ଆଉ ପୁଅ ଖରତମାଲ ବସିଛନ୍ତି । ସାଙ୍ଗରେ ସାତରଥୀ ତ୍ରିବେନା, ଜଟାବେନା ଆଜି । ଉମରା, ଗଉନ୍ତିଆ, ମକଦ୍ଦମ, ଜାନି, ଝାକର ପାଞ୍ଚ ପଂଚୁରାରୁ ଆସିଛନ୍ତି । ଆଜି ଚମ୍ପାସୁର ରଜାର ବିଚାର ହେବ ।

ଦରବାରକୁ ଅଣାଗଲା ଚମ୍ପାସୁର ରଜାକୁ । ରଜା ବନ୍ଦୀ । ମୁହଁ ତଳକରି ଠିଆହେଲେ । ରାଣୀ କହିଲେ- ବନ୍ଦୀ, ତୁମେ ଅତିଥି ରୂପେ ମୋ ପୁଅକୁ ଡାକିଥିଲା ଆଉ ବିଶ୍ୱାସ ରଖିପାରିଲ ନାହିଁ ? ପଛପଟୁ ଛୁରୀ ମାରିଲା । ତମକୁ କି ଦଣ୍ଡ ଦିଆଯିବ, ତମେ ହିଁ କୁହ ।ଚମ୍ପାସୁର ରାଜା କହିଲା - ମୋର ଦୋଷ ହୋଇଛି, ମୋତେ ଯାହା ଦଣ୍ଡ ଦେବେ ସହିବି । ମାରିଦେଲେ ବି ମୋ ଦୁଃଖ ନାହିଁ । ମୁଁ ଅନ୍ୟାୟ କରିଛି ।

ରାଣୀ କହିଲେ, ରାଜାର ଧର୍ମ ନ୍ୟାୟ ଦେବା । ପ୍ରଜାପାଳିବା । ତୁମେ ତୁମର ଧର୍ମ ପାଳନ କରିନାହଁ । ତୁମ ମନ୍ତ୍ରୀ ଓ ପାଖଲୋକ ଚିହ୍ନିପାରିଲ ନାହିଁ । ସେମାନେ ଭଲ କି ମନ୍ଦ ଜାଣିଲ ନାହିଁ । ତମେ ସିଂହାସନରେ ବସି ଅନ୍ଧ ହେଲ । ଭାବିପାରୁଛ, ଜଣେ ଦୁଷ୍ଟ ବୁଦ୍ଧିର ଶାସକ ଲାଗି ଆଜି ତମେ ବନ୍ଦୀ । ଆଉ ତୁମ ରାଜ୍ୟ ଲୋକଙ୍କ ଏହି ଦୁର୍ଦ୍ଦଶା ।

ରାଜା କହିଲା - ମୋର ଦୋଷ ହୋଇଛି । ମୁଁ ମୋର ଭୁଲ ବୁଝିପାରିଛି । ମୋତେ କ୍ଷମାକରନ୍ତୁ ।

କ୍ଷମା କଥା ଶୁଣି ସାତରଥୀ କହିଲେ, ନାଁ ଏ ରାଜକୁ କ୍ଷମା ନାହିଁ । ଯିଏ ଅତିଥିକୁ ବ୍ୟବହାର ଦେଇ ଜଣେ ନାହିଁ, ଯିଏ ଦୁଷ୍ଟ ଲୋକକୁ ଶାସନ କାମରେ ଲଗାଏ, ତାର କ୍ଷମା ନାହିଁ ।

ରାଣୀ ଖରତମାଲକୁ ଚାହିଁଲେ । କହିଲେ, ଏବେ ଖରତମାଲ କହୁ, ସିଏ ଚମ୍ପାସୁର ରଜାକୁ କି ଦଣ୍ଡ ଦେବ । ଖରତମାଲ କହିଲା, ମାଁ, ଏ ରାଜ ଆମପାଖରେ ତାଙ୍କ ଦୋଷ ସ୍ୱୀକାର କରି ସାରିଛନ୍ତି । ଅସଲ ଦୋଷ ଅସରଲିଆର । ସିଏ ତା ଦଣ୍ଡ ପାଇ ସାରିଛି । ଯଦି ଆମେ ରାଜାକୁ ଦଣ୍ଡଦେବା ତେବେ ତାଙ୍କ ରାଣୀ ଓ ରାଜ୍ୟର କଣ ହେବ ? ତା ଛଡ଼ା ମୁଁ ଭଲରେ ଫେରି ଆସିଛି । ଏଣୁ ରଜାକୁ କ୍ଷମା କରାଯାଉ । ଚମ୍ପାସୁର ରାଜା ଭାବି ନଥିଲେ, ପ୍ରାଣ ଦଣ୍ଡ ପାଇବା ଲୋକଙ୍କୁ କ୍ଷମା ଦେଉଛନ୍ତି । ପୁଣି ନିଜ ରାଜ୍ୟ ଶାସନ କରି ପାରିବା କ୍ଷମତା ବି । ଖରତମାଲ ପ୍ରକୃତରେ ଯୋଗ୍ୟ ଯୁବକ ।

ରଜା କହିଲେ - ମୋତେ ଆଉ ଅପମାନିତ କରନ୍ତୁ ନାହିଁ । ମୁଁ ମୋ ଭୁଲ୍ ବୁଝିପାରିଛି । ଏଣିକି ଦୁଇ ରାଜ୍ୟ ବନ୍ଧୁ ହୋଇ ରହିବା । ଜଣେ ଅନ୍ୟ ଜଣକର ସୁଖ ଦୁଃଖରେ ଭାଗ ନେବା । ହେଲେ ମୋର ଗୋଟିଏ ଅନୁରୋଧ ରାଣୀ ରଖିବେ ବୋଲି ଅନୁରୋଧ ।

ରାଣୀ କହିଲେ - ''କ'ଣ ସେ ଅନୁରୋଧ ।'' ରଜା କହିଲେ -

ମୋର ଏକମାତ୍ର କନ୍ୟା ସୁରଭିକୁ ଖରତମାଲ ବୀର ହାତରେ ଅର୍ପଣ କରିବି । ଆପଣ ଦୟାକରି ନାହିଁ କରିବେ ନାହିଁ । ତେବେ ଯାଇ ଜାଣିବି ଆପଣ ମୋତେ ପ୍ରକୃତିରେ କ୍ଷମା କରିଛନ୍ତି ।

ରାଣୀ ସମ୍ମତି ଦେଲେ ଓ ହସି ଦେଲେ । ସଭାରେ ସମସ୍ତେ ଖରତମାଲର ଜୟ ଜୟ କଲେ । ରଜା ହାତରୁ ବେଡ଼ି ଖୋଲି ଦିଆଗଲା । ଖରତମାଲର ସହିତ ଚମ୍ପାସୁରର କନ୍ୟା ସୁରଭିର ବିବାହ ସମ୍ପନ୍ନ ହେଲା ।



# ସୁନାଧର -ରମେଳା

କନକପୁର ଗାଁ । ନାଗେଶ୍ୱର ଗଁଉତିଆ ବୁଢ଼ା ଜଣେ ପୁରୁଖା ଲୋକ । ବୁଢ଼ାର ଚବିଶ ହଳକୁ ଚବିଶ ହଳିଆ । ସମସ୍ତେ ବଳୁଆ । ବୁଢ଼ା ଘରେ ୧୦-୧୨ ବର୍ଷର ପୁରୁଣା ଧାନ ରହିଛି । ଗାଁରେ ପାଞ୍ଚ ପଞ୍ଚୁରାରେ ବୁଢ଼ା ବେଶ୍ ଜଣାଶୁଣା । ନାଗେଶ୍ୱର ବୁଢ଼ାର ସ୍ତ୍ରୀ ଉର୍ମିଳା । ତାଙ୍କର ଚାରୋଟି ପୁଅ । ନାଁ ଭୁଲବଲ, କଏବଲ, ମାୟାଧର ଓ ସୁନାଧର । ବଡ଼ ତିନିପୁଅ ବିବାହ କରିଥିଲେ । ସୁନାଧର ବିବାହ କରି ନଥିଲା । ବଡ଼ ତିନି ଭାଉଜ ସୁନାଧରକୁ ଶରଧା କରୁଥିଲେ । ସୁନାଧର ଖୁସିରେ ଦିନ କାଟୁଥିଲା ।

ଥରେ ଭୁଲବଲ, କଏବଲ ଓ ମାୟାଧର ଜଙ୍ଗଲକୁ ଗଲେ । ତିନୋଟି ଶଗଡ଼ ଧରି କାଠ ଆଣିବାକୁ ଗଲେ । ଅକଟକଟ ଜଙ୍ଗଲ । ଦିନବେଳେ ମହାବଳ ବାଘ ବାହାରେ । କଳା ଅନ୍ଧାର ଜଙ୍ଗଲରେ ଦିନବେଳେ ରାତି ପରି ଲାଗେ । ସେଇ ଜଙ୍ଗଲରେ ତିନିଭାଇ କାଠ ହାଣିଲା ବେଳେ ବାଘ ଓ ବାଘୁଣୀ ହାବୁଡ଼ରେ ପଡ଼ିଲେ । ବାଘ-ବାଘୁଣୀ ଦୁହେଁ ଗୋଟି ଗୋଟି କରି ତିନି ଭାଇକୁ ଖାଇଦେଲେ । ଜଙ୍ଗଲରୁ ଏମାନେ ଆଉ ଫେରିଲେ ନାହିଁ । ତାଙ୍କୁ ଖୋଜିବାକୁ ଯାଇ ବୁଢ଼ା ବି ମଲା । ନାଗେଶ୍ୱର ବୁଢ଼ା ଘରକୁ ଏକା ସଙ୍ଗେ ବିପଦ ପଡ଼ିଲା । ଘରକୁ ଛାରଖାର କରିଦେଲା । ବୁଢ଼ାର ଦୁଃଖରେ ବୁଢ଼ୀ ବି ମଲା ।

ରହିଲେ କେବଳ ତିନିବୋହୂ ଓ ସାନଦିଅର ସୁନାଧର ।

ବଡ଼ ଦୁଇ ଭାଉଜ ଘର ଛାଡ଼ି ପଳେଇଲେ । ସେମାନଙ୍କ ଖବର ଆଉ ସୁନାଧର ରଖିନାହିଁ ।

ସାନ ଭାଉଜର ନାଁ ରସମତୀ । ସିଏ ସୁନାଧରର ସେବାଯତ୍ନ କରେ । ତାକୁ ପାଳିପୋଷି ବଡ଼ କଲା ।

ସୁନାଧର ପିଲାବେଳୁ ହିଁ ଦୁଃଖ ପାଇଲା । ବାପା ମାଁ, ବଡ଼ଭାଇ ସମସ୍ତେ ମଲେ । ସେ ଶପଥ କଲା, ବାଘ ଉପରେ ପ୍ରତିଶୋଧ ନେବ । ତେଣୁ ସେ ଯୁଦ୍ଧବିଦ୍ୟା ଶିଖିଲା । ସେ ଜଣେ ବୀର ରୂପେ ପରିଚିତ ହେଲା ।

ଦିନେ ସୁନାଧର ବାହାରିଲା, ଧନୁତୀର ଧରି ଜଙ୍ଗଲକୁ । ସେଇଠି, ଯେଉଁଠି ତା ଭାଇମାନଙ୍କୁ ବାଘ ଖାଇଥିଲା । ସେଇ ବାଘକୁ ମାରି ସେ ତା' ରାଗ ଶାନ୍ତକଲା । ସେଇ ରାଜ୍ୟର ଲୋକ ବି ଶାନ୍ତିରେ ନିଃଶ୍ୱାସ ମାରିଲେ । ଲୋକେ ସୁନାଧରକୁ ପ୍ରଶଂସା କଲେ । ସୁନାଧର ଜଣେ ସୁନ୍ଦର ଯୁବକ । ଦିହରେ ତାର ସିଂହର ବଳ । ବୁଦ୍ଧି ଜ୍ଞାନରେ ବି ଆଗୁଆ । ତାକୁ ଗାଁର ଲୋକେ କହିଲେ, ସୁନାଧର ବୁଦ୍ଧିମାନ ଯୁବକ ।

ନିଜ ଗୋଡ଼ରେ ନିଜେ ଠିଆ ହେଲାଣି । ତାକୁ ଏବେ କନିଆଁ ଗୋଟେ ଆଣିଦେବା କଥା । ଜଣେ ସିଆନ୍ ବୁଢ଼ା କହିଲା, ସୁନାଧରର ଭାଉଜ ରସମତୀ ତ ଘରେ ଅଛି । ଭାଉଜ ଦିଅର ବିଭା ହେଲେ ତ କ୍ଷତି ନାହିଁ । ଏହା ଆମ ସମାଜରେ ଚଳେ । ହେଲେ ସୁନାଧର କହିଲା, ସିଏ ମୋତେ ମା' ପରି ପାଳିପୋଷି ମଣିଷ କରିଛି,

ତାକୁ ମୁଁ ସ୍ତ୍ରୀ ବୋଲିବି କିପରି ? କେତେ ଅନ୍ୟାୟ କଥା ତମେ କହୁଛ । ସେଇଠୁ ଜଣେ ବୁଢ଼ା କହିଲା, ତେବେ ତୁ ରାଜପାଲିର ଗୌଡ଼ ରାଜାର ଝିଅ ରମେଲାକୁ ବିଭା ହୁଅ ।

ସୁନାଧର ପଚାରିଲା - ''ତାକୁ ମୁଁ ବିଭାହେବି କିପରି ?''

ବୁଢ଼ା କହିଲା - ''ରମେଲା ବହୁତ ପାଠ ପଢ଼ିଛି । ବିଦ୍ୟା ସାଧିଛି । ଯିଏ ଯାହା ପଚାରିଲେ ତାର ଉତ୍ତର ଦେଇ ଦେଉଛି । ରମେଲା ସର୍ତ୍ତ ରଖିଛି, ଯେଉଁ ଲୋକର ଉତ୍ତର ସେ ଦେଇ ପାରିବ ନାହିଁ, ତାକୁ ସେ ସ୍ୱାମୀ ରୂପେ ଗ୍ରହଣ କରିବ । ଆଗରୁ ଉଣେଇଶ ଜଣ ଯୁବକଙ୍କୁ ପ୍ରଶ୍ନର ଉତ୍ତର ରମେଲା ଦେଇ ସାରିଛି । ସେଇ ଉଣେଇଶି ଜଣ ଯୁବକଙ୍କୁ ମୃତ୍ୟୁଦଣ୍ଡ ଦେଇ ସାରିଛି । ତେଣୁ ବାବୁ, ଯଦି ତୁ ରମେଲାକୁ ବିଭା ହେବାକୁ ଚାହୁଁ, ତେବେ ତାକୁ ଏମିତି ପ୍ରଶ୍ନ ପଚାରିବୁ, ଯେମିତିକି ସେ ଉତ୍ତର ଦେଇ ପାରିବ ନାହିଁ । ହାରିଯିବ । ତୁ ତାକୁ ଜିତିଲେ ତାକୁ ବିଭା ହେବୁ ।''



ସୁନାଧର ପଚାରିଲା - ''ରମେଲା ତ ବହୁତ ବିଦ୍ୟା ସାଧିଛି । ମୁଁ କ'ଣ ତାକୁ ବିଦ୍ୟାରେ ପାରିବି ? ଯଦି ସେ ମୋତେ ମୋ ପ୍ରଶ୍ନର ଉତ୍ତର ଦେଇ ଦିଏ, ତେବେ ମୋ ବଂଶ ବୁଡ଼ିଯିବ । ମୁଁ ତ ମୋ ବଂଶର ଶେଷ ଲୋକ । ତେଣୁ କଣ କରିବି କୁହ ।''

ବୁଢ଼ା କହିଲା - ''ଆରେ ବାବୁ, ଏତିକି ଜାଣିନାହୁଁ । ତୁ ଏମିତି ଏକ ପାଠ ପଚାରିବୁ, ଯାହା ତା ପଢ଼ିଲା ବିଦ୍ୟାରେ ନଥିବ ।''

ସୁନାଧର ପଚାରିଲା :- ମୁଁ ବୁଝି ପାରିଲିନି ।

ତାକୁ ତୁ ଶାଠରେ ଜିତିବୁ । ସେ ରାଜା ଝିଅ, ରାଜାଘରେ ସୁଖରେ ବଢ଼ିଛି । ତା ବୁଦ୍ଧି କେତେ ? ସୁନାଧରକୁ କଥାଟି ମାନିଲା । ସେ ଭାବିଲା, ରଜାଝିଅ ଜାଣି ନଥିବା କଥାଟି ପଚାରିବାକୁ ହେବ । ସେ ଯେମିତିକି ଉତ୍ତର ଦେଇପାରିବ ନାହିଁ । ସେଇ କଥାଟିକୁ ସେ ଭାବୁଥାଏ । କ'ଣ ପଚାରିବ ?

ଘରକୁ ଫେରିବା ବାଟରେ ସିଏ ଗୋଟିଏ ମଜାଦାର କଥା ଦେଖିଲା ।

ଗୋଟିଏ ନୁଆଣିଆ ଚାଳଘର ଛାତ ଉପରେ 'କୁମୁଡ଼ା' ସବୁ ଫଳିଛି ।

ସେଇ କୁମୁଡ଼ା ଲହର ଡିର୍‌ ସବୁ ଚାଳ ଉପରେ ଓହଳି ରହିଛି । ଗୋଟିଏ ଦୁର୍ବଳ ବାଛୁରୀ ଇଡ଼ିଙ୍ଗ୍ ମିଡ଼ିଙ୍ଗ କରି ଆସିଲା । ସେ କୁମୁଡ଼ା ଡିରଡ଼ (ଲତା) ମୁହଁରେ ଟାଣିଲା । ପତ୍ର ଖାଇବ ବୋଲି । ଡିର୍‌ ଟାଣି ଦେଲା । ଛାତ ଉପରେ ଥିବା କୁମୁଡ଼ା ସର ଘଟ୍ କରି ତଳେ ଭଟ୍‌କରି ପଡ଼ିଗଲା । ତାହା ଶୁଣି ଜଣେ ସ୍ତ୍ରୀ ଲୋକ ପାଖଘରୁ ବାହାରିଲା । ଦେଖିଲା, କେହି ନାହାନ୍ତି, ଘର ଛିନା, ସେ ସଙ୍ଗେ ସଙ୍ଗେ କୁମୁଡ଼ାକୁ ବେଗି ତା ଘରକୁ ନେଇଗଲା । ଏହା କେବଳ ସୁନାଧର ହିଁ ଦେଖିଥିଲା ।

ତାକୁ ଗୋଟିଏ ବୁଦ୍ଧି ଦିଶିଲା । ସିଏ ଢଗଟିଏ ଫାନ୍ଦିଲା ।

ଇଡ଼ିଙ୍ଗ୍ ମିଡ଼ିଙ୍ଗ୍ ଫରସରା
ସରଘଟ୍‌ନେ ଭଟ୍ ଢଲା, ଏବେତବେ ଚହଁରାଲା,
ଟପ୍‌ନେ ବେଗି ନେଲା,
ଜାଦ୍‌ଲେ ଉବେଇଣ ତୁ ବିଶ୍
ନାଇ ନାନଲେ ଦୁଇ ତୁ ଡିହ୍ ।।

ସୁନାଧର ଭାବିଲା, ଏହି ଢ଼ଗକୁ ସେ ପ୍ରଥମେ ତା ଭାଉଜକୁ ପଚାରିବ, ସେ ଯଦି କହି ନପାରିଲା, ତେବେ ଜାଣିବ ଯେ ଜେମା ବି ଉତ୍ତର ଦେଇ ପାରିବ ନାହିଁ । ଘରକୁ ଆସି ଭାଉଜକୁ କହିଲା, ବୋହୁ, ମୁଁ ରାଜପାଲିର ଗୌଡ଼ ରାଜାର ଝିଅ ରମେଲାକୁ ବିଭାହେବି । ହେଲେ ସିଏ ଗୋଟିଏ ପଣ ରଖିଛି । ତାହେଲା, ତାକୁ ତମେ ପ୍ରଶ୍ନଟିଏ ପଚାରିବ । ସିଏ ଯଦି ପ୍ରଶ୍ନର ଉତ୍ତର ଦିଏ ତେବେ ତମ ମୁଣ୍ଡ କଟା ହେବ । ଯଦି ସେ ଉତ୍ତର ଦେଇ ନପାରିଲା, ତେବେ ତମେ ତାକୁ ବିବାହ କରି ପାରିବ ।



ରସମତୀ ସୁନାଧରକୁ କହିଲା, ବାବୁ, ତୋତେ ମୁଁ କେଡ଼େ କଷ୍ଟ ପୋଷିଲି । ଏବେ ତୁ ରଜାଝିଅକୁ ବିବାହ କରିବୁ ? ଯଦି ତୁ ସେଇଠି ହାରିଯାଉ ? ନାଇଁ, ମୁଇଁ ତୋତେ ସେଠିକି ଛାଡ଼ିବି ନାହିଁ ।

ସେଠୁ ସୁନାଧର କହିଲା - ବୋହୂ, ଶୁଣ । ମୁଁ ତୁମକୁ ଗୋଟିଏ କଥା ପଚାରିବି । ତମେ ତାର ଉତ୍ତର ଦେବ । ସେଇଠୁ ସୁନାଧର ପଚାରିଲା -

**ଇଡ଼ିଙ୍ଗ ମିଡ଼ିଙ୍ଗ ଫରସରା...**

ରସମତୀ ତାକୁ ଶୁଣିଲା । ହେଲେ କିଛି ବୁଝି ପାରିଲା ନାହିଁ । ସୁନାଧର କହିଲା, ଯାକୁ ଗାଁରେ ସମସ୍ତଙ୍କୁ ପଚାରିବା । କିଏ ଉତ୍ତର ଦେଇ ପାରୁଛି ଦେଖିବା । ତା ପରେ ରଜା ଝିଅ ପାଖକୁ ଯିବା । ଗାଁରେ ବୁଢ଼ା ବୁଢ଼ୀ ସମସ୍ତଙ୍କୁ ଏ ପ୍ରଶ୍ନ ପଚାରିଲା, କେହି ତାର ଉତ୍ତର ଦେଇ ପାରିଲେ ନାହିଁ । ସୁନାଧର ଭାବିଲା କୁମୁଡ଼ା ପଡ଼ିବା କଥା କେହି ଦେଖିଥିଲେ ସିନା ଜାଣିଥାନ୍ତା । ଏଇଟାତ ଶାଠ ବୁଦ୍ଧି । ହଉ ଦେଖିବି, ରାଜଝିଅ କିମିତି ଏହାର ଉତ୍ତର ଦେବ ।

ସେଇଠୁ ସୁନାଧର ରାଜପୁର ଗୌଢ଼ ରଜାଙ୍କ ଘରକୁ ବାହାରିଲା । କନକପୁରଠାରୁ ରାଜପୁର ଚବିଶିକୋଶ ବାଟ । ସକାଳୁ ସିଏ ଗାଧେଇଲା । ଦେବୀ ପାଖରେ ଅକଦ୍ ଚାଉଲ୍ ଫୁଇ ଦେଲା । ଦୀପଟିଏ ଜାଳି କହିଲା, ମାଁ, ମୋ ବଂଶର ମୁଇଁ ଶେଷ ଖୁଟି । ମୁଇଁ ମଲେ ମୋର ବଂଶ ବଡ଼ିଲା ବୋଲି ଜାଣ । ମୋତେ ତୁଇ ରଖିଲେ ରଖ, ମାରିଲେ ମାର୍ । ଦେବୀଙ୍କୁ ପୂଜା ଆରଧନା କଲା । ପୂଜା ସରିଲା ପରେ ଦେଖିଲା, ଦେବୀର ମଥା ଉପରୁ ମନ୍ଦାର ଫୁଲଟିଏ ଖସିପଡୁଛି । ସୁନାଧର ସେଇ ଫୁଲକୁ ମାର ଆଶୀର୍ବାଦ ବୋଲି ଜାଣିଲା ।

ବୋହୂକୁ କହିଲା, ବୋହୂ, ମୁଁ ଯାଉଛି । କେବେ ଆସିବି ଠିକ୍ ନାହିଁ । ହେଲେ ଏମିତି ଜାଣିଥା, ମୁଇଁ ଜିତିକରି ଆସିବି । ଗଲାବେଳେ ଏକଲା ଯାଉଛି, ଦେଖିବୁ, ଆସିଲାବେଳେ ଦୁଇଜଣ ଆସିବୁ ।

ରସବତୀ କାନ୍ଦି ପକାଇଲା । ସୁନାଧର ମୁଣ୍ଡକୁ ନିଜ ଛାତିରେ ଚାପି କହିଲା, ବାବୁ, ତୋତେ ଦେଖି ବଞ୍ଚିଥିଲି । ଅନ୍ୟ ବୋହୂମାନେ ଘର ଛାଡ଼ି ପଳାଇଲେ । ମୁଁଇ ତୋତେ ଛାଡ଼ି ପାରିଲି ନାହିଁ । ତୁଇ ବଞ୍ଚିଥିଲେ ବୁଆ, ଆମର ବଂଶ ରହିବ । ଯା, ମା ଚଣ୍ଡୀ ସମଲାଇ, ମାଣିକେଶ୍ୱରୀ ଲଂକେଶ୍ୱରୀ, ଛାରବରଲା ସବୁ ଦେବୀ ଦେବତାକୁ ସୁମରଣା କରି ଯା । ଏତିକି କହି ରସମତୀ ସୁନାଧରକୁ ଗୋଟିଏ ''ଫୁଟକି ମୁଦି'' ପିନ୍ଧାଇ ଦେଲା । କହିଲା, ଯେତେବେଳେ ବିପଦ ପଡ଼ିବ । ଏହି ମୁଦି ତୋତେ ବଂଚାଇଦେବ । ତୁ ନଆସିଲା ଯାଏଁ ମୁଁ ଅନ୍ନ ପାଣି ଛାଡ଼ିଲି ।''

ସୁନାଧର ବୋହୂ ମୁହଁକୁ ଚାହିଁଲା, ଦୁଃଖରେ କାନ୍ଦି ପକାଇଲା । ସତେ ତ, ମା ପରି ବୋହୂ ମୋତେ କେତେ ଯତ୍ନ କରିଛି । ମୋ ପାଇଁ ସେ ନିଜ ଜୀବନକୁ ତୁଚ୍ଛ କରିଦେଲା । ସୁନାଧର ବୋହୂକୁ ମୁଣ୍ଡିଆ ମାରିଲା । ବଂଶୀଟିଏ ଧରିଲା । ଆଉ ଏକ ମୁହାଁ ହୋଇ ବାହାରିଲା ରାଜପୁର ଗାଁ । ବାଟରେ ଅକଟକଟ ଜଙ୍ଗଲ । ଦିନବେଳେ ବାଘ, ଭାଲୁ, ହାତୀ, ଗୟଳ । ଚନ୍ଦନ, ଶାଗୁଆନ ଓ ଶାଳ ଗଛରେ ଜଙ୍ଗଲ ଭର୍ତି । ଚଢ଼େଇଙ୍କ ଗୀତ ଶୁଣି ଶୁଣି ଯାଉଛି ସୁନାଧର । ମୁଣ୍ଡରେ ଖୋସିଛି ମୋହନବଂଶୀ ।

ହଠାତ୍ ଦେଖିଲା ସେ, ଦଳେ ହାତୀ ତା ଆଡ଼କୁ ମାଡ଼ି ଆସୁଛନ୍ତି । ସୁନାଧର ଦେଖିଲା, ରାଜପୁର ଅଞ୍ଚଳ ହାତୀ ଆଉ ଚନ୍ଦନ ବଣ ଲାଗି ପ୍ରସିଦ୍ଧ । ସେ ଜାଣିଲା ରାଜପୁର ଗାଁ ପାଖେ ଥିବ ବୋଧେ । ହାତୀ ଦେଖି ସୁନାଧର ଡରିଲା ନାହିଁ । ସେ ଓଲଟି ହାତୀକୁ ପ୍ରଣାମ କଲା । କହିଲା ମା ଲକ୍ଷ୍ମୀ, ତୋ ବାହାନକୁ ଦେଖାଇ ଦେଲୁ । ମୋର ଶୁଭ ହେବ । ସେ ଆଡ଼ ହୋଇଗଲା । ହାତୀମାନେ ନିଜ ବାଟରେ ନିଜେ ଚାଲିଗଲେ ।



ବାଟରେ ଜଣେ ବୁଢ଼ାକୁ ଦେଖିଲା ସୁନାଧର । ପଚାରିଲା, ବାବା, ରାଜପୁର ଗାଁକୁ ଯିବା ରାସ୍ତା କେଉଁଟା ?

ବୁଢ଼ା ତାକୁ ପଚାରିଲା - ତମେ ରାଜପୁର କାହିଁକି ଯାଉଛ ବାବୁ ?

ସୁନାଧର କହିଲା - ରାଜପୁରରେ ଜଣେ ସୁନ୍ଦରୀ ରାଜକନ୍ୟା ଅଛି । ତା ନାଁ ରମଲୋ । ତାକୁ ମୁଁ ବିବାହ କରିବି । ସେଇଥିପାଇଁ ରାଜପୁର ଯାଉଛି । ବୁଢ଼ା କହିଲା - ଏଇ ଡେବିରି ବାଟେ ଯେଉଁ ରାସ୍ତା ଦେଖୁଛ, ସେ ବାଟେ ଯାଅ, ତମେ ରାଜପୁରରେ ପହଞ୍ଚିଯିବ ।

ବୁଢ଼ା କଥାରେ ସୁନାଧର ଡେବିରିପଟ ରାସ୍ତାରେ ଧରିଲା ।

କିଛି ଦୂର ଗଲା । ବାଟରେ ଗୋଟିଏ ପଦ୍ମ ପୋଖରୀ ପଡ଼ିଲା । ସେଇଠି ସୁନ୍ଦରୀ ରମେଲା ବସିଥାଏ । ସୁନାଧର ତାକୁ ପଚାରିଲା, ରାଜପୁର ଗାଁକୁ ରାସ୍ତା ଏଇଟା ତ ?

ରମେଲା କହିଲା - ରାଜପୁରକୁ ତ ଦୁଇଟା ରାସ୍ତା ଅଛି । ଗୋଟିଏ ସିଧା । ଆରଟି ବୁଲାଣିଆ । ତମେ ତ ବୁଲାଣିଆ ରାସ୍ତା ଧରିଛ । ସିଧା ବାଟଟି ଛାଡ଼ି ଆସିଲଣି । ଏଇଟା ଜଙ୍ଗଲବାଟ । ବାଘ ଭାଲୁ ଅଛନ୍ତି ।

ସୁନାଧର ଭାବିଲା, ବୁଢ଼ା ସତ କହୁଛି ନାଁ ଝିଅଟି ସତ କହୁଛି । ହେଲେ ଜଣେ ବୁଢ଼ା ଲୋକଙ୍କ କଥା । ଅବିଶ୍ୱାସ କରିବି କିପରି ? ବରଂ ନାରୀର କଥାରେ କି ଠିକଣା ଅଛି ? ସୁନାଧର ଏହା ଭାବି ବୁଢ଼ା କହିଥିବା ବାଟରେ ହିଁ ଗଲା ।

କିଛି ଦୂର ଯାଇଛି, ବାଟରେ ଶିଆଳି ଲଟା ତା ଦେହସାରା ଗୁଡ଼େଇ ହୋଇଗଲା । ଲଟା ଯେତିକି ଛିଡ଼ଉ ଥାଏ, ଲଟା ତାକୁ ସେତିକି ଗୁଡ଼ଉ ଥାଏ । ସେଇଠୁ ସେ ଫୁଟକି ମୁଦିକୁ ଚାହିଁ ସୁମରଣା କଲା । ସାଙ୍ଗେ ସାଙ୍ଗେ ଲଟା ସବୁ ଛିଡ଼ିଗଲା । ସୁନାଧର ଚାଲିଲା ରାଜପୁର ଗାଁ ଆଡ଼କୁ ।

ସେଇଠୁ କିଛି ଦୂର ଯାଇଛି କି ନାହିଁ, ଦେଖିଲା ନଇଟିଏ । ନଇରେ ପାରିହେବାକୁ ପଶିଲା ବେଳେ, ହଠାତ୍ ନଈର ପାଣି ବଢ଼ିଗଲା ଓ ସୁନାଧରକୁ ବୁଡ଼ାଇ ଦେବାକୁ ବସିଲା । ସୁନାଧର କୁହୁକମୁଦିକୁ ଚାହିଁ ସୁମରଣା କଲା । ପାଣି କମିଗଲା । ସୁନାଧର ନଈ ପାର ହୋଇ ରାଜପୁର ଗାଁରେ ପହଞ୍ଚିଲା ।

ସେଇଠି ସେ ଜଣେ ଲୋକକୁ ରମେଲା ଘର କେଉଁଠି ବୋଲି ପଚାରିଲା । ଲୋକଟି କହିଲା -କ'ଣ ରମେଲାକୁ ବିବାହ କରିବାକୁ ଆସିଛ ? ଆଗରୁ ଉଣେଇଶି ଜଣ ମଲେଣି । ତମେ ମରିବାକୁ କାହିଁକି ଆସିଛ । ଫେରିଯାଅ ।

ହେଲେ ସୁନାଧର ତ ଆସିଛି । ରମେଲାକୁ ବିଭା ହେବାପାଇଁ ।

ଶେଷରେ ସେ ରମେଲା ଘରେ ପହଞ୍ଚିଲା । ତାକୁ ସେମାନେ ପଚାରିଲେ କାହିଁକି ଆସିଛ ? ସୁନାଧର କହିଲା, ମୁଁ ରମେଲାକୁ ବିବାହ କରିବି । ଏଣୁ ପ୍ରଶ୍ନ ପଚାରିବାକୁ ଆସିଛି ।

ସେଇଠୁ ରମେଲାର ବାପା ବାହାରିଲା । ସୁନାଧରକୁ ପଚାରିଲା, ତମେ ମୋ ଝିଅକୁ ବିଭା ହେବାକୁ ଆସିଛ । ହଉ, ତୁମେ ମୋର ଅତିଥି । ହେଲେ, ତୁମେ ପ୍ରଶ୍ନର ଉତ୍ତର ଯଦି ରମେଲା ଦେଇଦିଏ ତେବେ ତମ ମୁଣ୍ଡକାଟ ହେବ । ତୁମେ ରାଜିତ ?



ସୁନାଧର କହିଲା - ତାହା ତ ମୁଁ ଜାଣିକରି ଆସିଛି । ସେଇଠୁ ବୁଢ଼ା ସୁନାଧରର ଘର ଦ୍ୱାର କଥା ପଚାରିଲା । କନକପୁରର ଭୁଜବଳର ଭାଇ ବୋଲି ଜାଣି ଖୁସି ହେଲା । ସେଇଠୁ ସୁନାଧରକୁ ରହିବା ପାଇଁ ଅତିଥି ଘର ଦିଆଗଲା । ସୁନାଧର ଜାଣିଲା, ଯେଉଁ ବୁଢ଼ାକୁ ରାଜପୁର ବାଟ ପଚାରୁଥିଲା, ଇଏ ସେହି ବୁଢ଼ା । ରମେଲାର ବାପା । ହେଲେ ବୁଢ଼ା ତାକୁ ଜଙ୍ଗଲବାଟ ଦେଖାଇଲା କାହିଁକି ? ସେ ପଟେତ ବିପଦ ହିଁ ବିପଦ ।

ସୁନାଧର ବାରଦିନ ଧରି ଚାଲି ଚାଲି ଆସିଥିଲା । ତାକୁ ଥକ୍‌କା ଲାଗୁଥିଲା । ଜଣେ ଚାକର ତାକୁ ଗାଧୋଇବାକୁ କହିଲା । ଗାଧୋଇବା ପାଇଁ ଖୋସାରେ ଖୋସାଏ ପାଣି ଆଣି ଦେଲା । ଏତିକି ପାଣିରେ ହିଁ ଗାଧୋଇବ ବୋଲି କହିଲା । ସୁନାଧର କିଛି ବୁଝିପାରିଲା ନାହିଁ । ଖୋସାଏ ପାଣିରେ କିମିତି ଜଣେ ମଣିଷ ଗାଧୋଇବ । ତେଣୁ ସୁନାଧର ମୁଦିକୁ ଚାହିଁଲା । ମୁଦି ଅକସ୍ମାତ୍ ଲାଲ ଦେଖାଗଲା । ସୁନାଧର ବୁଝିଲା, କିଛି ଅସୁବିଧା ଅଛି । ସେ ଖୋସାର ପାଣିକୁ ତଳେ ପକାଇଲା ।

ବୁଢ଼ା ଜାଣିଲା ସୁନାଧର ନିଜକୁ ବିପଦରୁ ରକ୍ଷା କରିପାରୁଛି । ବୁଢ଼ା ସୁନାଧରକୁ କହିଲା, ବାବୁ, ତୁ ଗୋଟେ ପରୀକ୍ଷାରେ ସଫଳ ହେଲୁ । ହେଲେ ତୁ ଆହୁରି କେତେଟି ପରୀକ୍ଷା ଦେବୁ । ସେ ସବୁଥିରେ ଜିତିଲେ ଯାଇ ମୋ ଝିଅକୁ ପ୍ରଶ୍ନ ପଚାରିବୁ । ସେ ପ୍ରଶ୍ନରେ ହାରିଲେ ତୁ ତାକୁ ବିଭାହେବୁ । ଏବେ ଖାଇପିଇ ଆରାମ କର ।



ରମେଲା ସେଇଠୁ ସୁନାଧର ପାଇଁ ଖାଇବା ଜିନିଷ ଧରି ସୁନାଧର ପାଖକୁ ଆସିଲା । ସୁନାଧର ଦେଖିଲା, ଏଇ ଝିଅଟି ତ ସେ ପୋଖରୀ କୂଳରେ ବସିଥିବାର ଦେଖିଥିଲା । ଝିଅଟି ତାକୁ ଆଉ ଗୋଟିଏ ବାଟରେ ଯିବାକୁ କହୁଥିଲା । ଏ ହେଲେ ଝିଅର ବାପା କାହିଁକି ଆଉ ଗୋଟିଏ ବାଟ ଦେଖାଇଲା, କିଏ ଠିକ୍ ?

ତା ପରଦିନ ରମେଲାର ବାପା ସୁନାଧରକୁ କହିଲା, ତୁ ରାଖମନକୁ ଯିବୁ ଓ ବାର ହାତର କେନ୍ଦୁ ଗଛକୁ

ନିଜେ ମାରି ନିଜେ ବୋହି ଆଣିବୁ । ସୁନାଧର ଟାଙ୍ଗିଆ ଧରି ଚୁରାଖମନକୁ ଗଲା ଓ କେନ୍ଦୁ ଗଛ ମାରି ୧୨ ହାତର ଖୁଣ୍ଟ ଧରି ବୁଢ଼ା ପାଖରେ ରଖିଦେଲା । ବୁଢ଼ା ମନ ଭିତରେ ଖୁସି ହେଲା । କହିଲା, - ତୋତେ ଆଉ ତିନୋଟି କଥା କରିବାକୁ ହେବ । ପଲମା ଜଙ୍ଗଲକୁ ଶିଆଳିଲଟା ଆଣିବାକୁ ଯିବୁ । ସୁନାଧର ସେଇଠୁ ପଲମା ଜଙ୍ଗଲକୁ ଯାଇ ବାର ମହଣ ଶିଆଳି ଲଟା ବୁଢ଼ା ଘରକୁ ଆଣିଲା ।

ତାପରେ ବୁଢ଼ା କହିଲା, ପୋଡ଼ ମହିଷୀଙ୍କ ପାଇଁ ପଘା ତିଆରି କରିବୁ । ସୁନାଧର ବାର ମହଣ ଶିଆଳି ଲଟାକୁ ପଘା ତିଆରି କଲା । ବୁଢ଼ା ସେଠୁ କହିଲା, ଏହାପରେ ତୋତେ 'ରୁପେନ୍‌ବାଲି' ଗାଈ ପାଖକୁ ଯାଇ ତା କ୍ଷୀର ଦୁହିଁ ଆଣିବାକୁ ପଡ଼ିବ । ରୂପେନବାଲି ଗାଈ ନିୟମିଗିରି ପର୍ବତରେ ରହିଛି । ତାକୁ ତୋତେ ଖୋଜି ଆଣିବାକୁ ହେବ ।

ସୁନାଧର ଭାବିଲା, ମୁଁ ପ୍ରଶ୍ନ ପଚାରି ରମେଲକୁ ବିଭା ହେବାକୁ ଆସିଥିଲି । ବୁଢ଼ା ମୋତେ କାମ କରାଇ କରାଇ ଅବସ୍ଥା କରିଦେଲାଣି । ସେ ରମେଲାକୁ ଭେଟିଲା, କହିଲା, ରମେଲା, ମୁଁ ତୋତେ ପାଇବା ପାଇଁ ଆସିଥିଲି । ଏବେ ଦେଖୁଛି, ବୁଢ଼ା ମୋତେ ଖାଲି ପରୀକ୍ଷା କରୁଛି । ରମେଲା ସୁନାଧରର ରୂପ, ଗୁଣ ଓ ବଳ ମାପି ସାରିଥିଲା । ତାକୁ ମନେ ମନେ ପାଇବା ପାଇଁ ସମଲେଶ୍ୱରୀକୁ ସୁମରଣା କରିଥିଲା । ରମେଲା ତାକୁ ସାହସ ଦେଇ କହିଲା, ତୁ ବୀର ପୁରୁଷ, ଏତିକି କାମକୁ ପଛଘୁଞ୍ଚା ଦେବୁ । ସୁନାଧର କହିଲ, ମୁଁ କାମକୁ ଡରୁ ନାହିଁ, ତେବେ ବୁଢ଼ା ମୋତେ ଏତେ ପରୀକ୍ଷା କରୁଛି କାହିଁକି ? ରମେଲା କହିଲା - ତୁ ଯେଉଁଥିପାଇଁ ଆସିଛୁ, ତା ପାଳନ କର । ତୁ ଯଦି ନ ପାରିବୁ ତେବେ ଆସୁଥିଲୁ କାହିଁକି ? ସୁନାଧର କହିଲା - ମୁଁ ହାରିବାପାଇଁ ଆସିନାହିଁ । ହଉ ମୁଁ ଏବେ ବୁଢ଼ାର ସର୍ତ୍ତ ପାଳନପାଇଁ ଚାଲିଲି ।

ସୁନାଧର ଚାଲିଲା ନିୟମଗିରି ପର୍ବତକୁ । ସେଇ ପର୍ବତ ତଳେ ବିରାଟ ଏକ ଶାଢ ବଣ । ବଣ ମଝିରେ ଏକ ସମତଳ ଥାନ । ସେଇଠି ରପେନ ବାଲି ଗାଈର ଗୋଠ । ତା ଚାରିପଟେ ବାରକୋଡ଼ି ବାଘ ଘେରି ଜଗିଛନ୍ତି । ତା'ଚାରିପଟେ ଘଂଚ ଜଙ୍ଗଲ ।

ସେଇଠି ପହଞ୍ଚି ସୁନାଧର ଦେଖିଲା, ଗାଈ ଦୁହିଁ ଆଣିବ କଣ ? ଏତେ ବାଘ ସେ ଏକାଠି ଗୋଟିଏ ଗାଈକୁ ଜଗି ବସିଥିବା ଦେଖିନଥିଲା । ଜାଣିଲା, ଗାଈର ନିଶ୍ଚୟ କିଛି ଶକ୍ତି ଅଛି । ନୋହିଲେ ବାଘ ଗାଈକୁ ଖାଇବା କଥା । ଗାଈର ସୁରକ୍ଷା ପାଇଁ ବାରକୋଡ଼ି ବାଘ । ବାପ୍‌ରେ ବାପ୍ । ରମେଲାକୁ ବିଭା ହେବି କଣ, ବରଂ ଏଠି ଜୀବନ ନିଶ୍ଚୟ ଯିବ ।

ସୁନାଧର ଅସହାୟ ହୋଇଗଲା । କଣ କରିବ କିଛି ଭାବି ପାରିଲା ନାହିଁ । ସେଇଠୁ ସେ ମୁଦି ଆଡ଼କୁ ଚାହିଁଲା । ଦେଖିଲା ମୁଦି ଭିତରେ ଗୋଟିଏ ବଂଶୀ ଦିଶୁଛି । ହଠାତ୍ ତାର ମନେ ପଡ଼ିଲା, ସେ ତା ମୁଣ୍ଡ ପଗଡ଼ିରେ ବଂଶୀଟିଏ ଖୋସିଛି । ଏଇ ବଂଶୀ ମୋହନବଂଶୀ । ଦେବୀ କୃପାରୁ ସେ ଏହି ବଂଶୀଟି ପାଇଥିଲା । ସୁନାଧର ବୁଝିଲା, ଏଇ ବଂଶୀ ଦ୍ୱାରା ହିଁ ସେ ତାର କାର୍ଯ୍ୟ କରିପାରିବ । ସେ ବଂଶୀଟିକୁ ମଥାରୁ ଆଣି ବଜାଇବାରେ

ଲାଗିଲା । ବଂଶୀ ସ୍ୱନ ଶୁଣି ବାଘ ସବୁ ଶାନ୍ତ ପିଲା ପରି ଚୁପ୍ ହୋଇ ବସି ରହିଲେ । ସୁନାଧର ବଂଶୀ ବଜାଇ ଚାଲିଥାଏ । ଦେଖିଲା ବାଘ ସବୁ ଘୁମେଇ ପଡ଼ିଛନ୍ତି । ସେଇଠୁ ସେ ରୂପେନ ବାଛି ଗାଈ ନିକଟକୁ ଗଲା । ଗାଈର ଦେହ ଛୁଇଁ କହିଲା, ମାଁ ତୋ କୃପା ଥିଲେ ମୁଁ ରମେଲବାଇକୁ ପାଇପାରିବି । ରୂପେନ୍‌ଗାଈ କିଛି ଅସୁବିଧା କଲା ନାହିଁ । ବରଂ ସୁନାଧରର ଦେହକୁ ଚାଟିବାରେ ଲାଗିଲା। ସୁନାଧର ରୂପେନ ଗାଈଠାରୁ କ୍ଷୀର ନେଇ ବାହାରିଲ ।

ବଡ଼ ଯତ୍ନରେ ସେ କ୍ଷୀରଟିକୁ ଧରିଥାଏ । ସେ ସାତଦିନ ସାତରାତି ଚାଲିଲା ପରେ ରାଜପୁର ଫେରିଲା । ବୁଢ଼ା ହାତରେ କ୍ଷୀର ହାଣ୍ଡିକୁ ଧରେଇ ଦେଇ କହିଲା । ବାବା, ପରୀକ୍ଷା ଏତିକି ନାଁ ଆଉ ଅଛି ।

ବୁଢ଼ା ଟିକେ ହସି ଦେଇ ସୁନାଧରକୁ କହିଲା, ବାବୁ ସୁନାଧର, ମୁଁ ତୋ ଉପରେ ଖୁସି । ମୋ ଭାଗ୍ୟଥିଲେ ତୋତେ ଜୋଇଁ କରି ପାରିବି । ଏବେ ରମେଲାର ପାଳି । ତୁ ତାକୁ ଯାହା ପଚାରିବୁ ପଚାର । ସେ ଉତ୍ତର ଦେଇ ପାରିଲେ, ତୁ ତାକୁ ବିଭା ହୋଇ ପାରିବୁ ନାହିଁ, ବରଂ ମରିବୁ । କିନ୍ତୁ ତୋ ଉତ୍ତର ଯଦି ସେ ଦେଇ ନପାରେ, ତେବେ ମୁଁ ତାକୁ ତୋ ସହିତ ବିଭା କରାଇବି ।

ତହିଁ ଆରଦିନ ସଭା ବସିଲା । ରମେଲା ସୁନ୍ଦରୀ ବେଶ ଭୂଷା ହୋଇ ଆସିଥାଏ । ଗୋଟିଏ ମଞ୍ଚରେ ରମେଲା ଓ ଅନ୍ୟ ଏକ ମଞ୍ଚରେ ସୁନାଧର ବସିଥାଏ । ବୁଢ଼ା ଉଠି କହିଲା, ଏବେ ସୁନାଧର ମୋ ଝିଅକୁ ବିଭା ହେବାକୁ ଆସିଛି । ସେ ଯଦି ଜଣେ ତେବେ ମୁଁ ଶପଥ କରୁଛି, ମୋ ଝିଅକୁ ସୁନାଧର ହାତରେ ସଁପି ଦେବି । ହେଲେ ସୁନାଧର ଯଦି ହାରିଯାଏ ତେବେ ମୋର ଦୋଷ ନାହିଁ । ତାର ମୁଣ୍ଡକାଟ ହେବ ।

ଏହାପରେ ସୁନାଧରକୁ ପ୍ରଶ୍ନ ପଚାରିବାକୁ ବୁଢ଼ା ନିର୍ଦ୍ଦେଶ ଦେଲା । ସୁନାଧର ପଚାରିଲା :-

ମୁଁ ଗୋଟିଏ ପ୍ରଶ୍ନ ପଚାରିବି । ତୁମେ ଏହାର ଉତ୍ତର ଦେବ ।

ପ୍ରଶ୍ନଟି ହେଲା - ଇଡିଙ୍ଗ ମିଡ଼ିଙ୍ଗ ଫୁରସରା, ସରଘଟକେ ଭଟ୍ କଲା,
ଏବେ ତେବେ ଚହଁରାଲା, ଟପ୍‌ନେ ବୋଗି ନେଲା,
ଜାବ୍‌ଲେ ତୋ ଉନିଶ୍ ନୁ ବିଶ୍,ନେଇ ଜାବ୍‌ଲେ ଦୁଇନୁ ତିନ୍ ।

ଏହାର ଅର୍ଥ କହ । ମୁଁ ପ୍ରଶ୍ନର ଗଣ୍ଠିଟିଏ ଦେଲି । ଏ ଗଣ୍ଠିଟି ତମେ ଫିଟେଇ ଦେଲେ ମୁଁ ହସି ହସି ମରିବି । ଯଦି ତୁମେ ଉତ୍ତର ଦେଇ ନପାର, ତେବେ ତୁମକୁ ବିଭା ହେବି ।



ରମେଲା ପ୍ରଶ୍ନଟିକୁ ଶୁଣିଲା । ମଥାରେ ଜୋର୍ ଦେଲା । ଇଏ କି ପ୍ରଶ୍ନ ? ଜିଏ କଣ ନେଇଯାଉଥିବା କଥା ଏହି ପ୍ରଶ୍ନରେ ଅଛି । ରମେଲା ଏହାର ଅର୍ଥ କିମିତି ବାହାର କରିବ ? ତାକୁ କିଛି ବୁଦ୍ଧି ଦିଶିଲା ନାହିଁ । ସିଏ ଅପମାନରେ ଲାଲ ପଡ଼ିଗଲା । ସଭାର ଲୋକେ ଚକିତ ହେଲେ । ଏତେ ବିଦ୍ୟା ଜାଣିଲା ଝିଅ । ଉଣେଇଶି ଜଣ ଯୁବକଙ୍କ ମୁଣ୍ଡକୁ ନେଲାଣି । ଏଇ ଯୁବକର ଉତ୍ତର ଦେଇ ପାରୁନାହିଁ ? ସଭା ଲୋକେ କହିଲେ, - ରମେଲା ଜାଣିଛୁତ ଉତ୍ତର ଦେ । ନୋହିଲେ ଜାଣିନାହିଁ ବୋଲି କହ । କହ ଜାଣିଛୁ କି ନାହିଁ ।

ରମେଲା ମୁଣ୍ଡ ହଲାଇ ନାଁ କଲା ।

ସଭାଲୋକେ ପୁଣି ପଚାରିଲେ - ତେବେ ତୁ ହାରିଲୁ ।

ରମେଲା ହଁ ବୋଲି କହିଲା ।

ସେଠୁ ବୁଢ଼ା ସଭାଲୋକଙ୍କୁ କହିଲା, ଭାଇମାନେ ମୋର ଝିଅ ରମେଲାକୁ ମୁଁ ସୁନାଧର ହାତରେ ସଁପି ଦେଲି ।

ତାପରେ ସଭାଲୋକ ହରିବୋଲ ଧ୍ୱନି ଦେଲେ । ଏତେ ପରୀକ୍ଷା ଦେଲୁ ସଫଳ ହେଲୁ । ଧନ୍ୟ ତୋର ବାପା ମାଁ ବୋଲି କହିଲେ ।

ରମେଲା ସହିତ ସୁନାଧରର ବି ବାହ ହେଲା । ରମେଲାକୁ ଧରି ସୁନାଧର ନିଜ ଗାଁକୁ ଫେରିଲା । ରସମତୀ ବୋହୂ ମନ ଦୁଃଖରେ ବସିଥାଏ । ଦେଖିଲା, ବଜାଗଜା କରି କିଏ ଜଣେ ଆସୁଛି । ପାଖକୁ ଆସି ଦେଖେତ ସାନ ଦିଅର ସୁନାଧର । ସୁନାଧର ଭାଉଜକୁ ମୁଣ୍ଡିଆ ମାରିଲା । ସବୁ କଥା କହିଲା । ରମେଲା, ରସମତୀ ଭାଉଜର ପାଦଛୁଇଁ ପ୍ରଣାମ କଲା ।

ଜାତି ସମାଜକୁ ଡକାଇ ନେଙ୍ଗାବିଧି କଲେ । ଭୋଜିଭାତ କଲେ ।



ମଧୁରାତି ଦିନ ରମେଲା ସ୍ୱାମୀ ସୁନାଧରକୁ କହିଲା - ଏ, କଥାଟିଏ ପଚାରିବି ?

ସୁନାଧର : କୁହ ।

ରମେଲା : ତମେ ସେଦିନ ଯେଉଁ ପ୍ରଶ୍ନ ପଚାରିଲ ...

ସୁନାଧର : ହୁଁ ।

ରମେଲା ତା' ଅର୍ଥ କ'ଣ । ମୁଁ ଏବେ ବି ଜାଣି ପାରିନାହିଁ ।

ସୁନାଧର : ତୁମେ ଯଦି ତା ଅର୍ଥ ଜାଣିଥାନ୍ତ, ତେବେ ତ ମୋ ମୁଣ୍ଡକଟା ହୋଇଥାନ୍ତା ।

ରମେଲା : ନାଁ ସେକଥା ଆଉ କହନାହିଁ ।

ତମକୁ ଦେଖିଲା ପରେ ମୁଁ ମାଣିକେଶ୍ୱରୀ ପାଖରେ ବଦନି କରିଥିଲି ।

ସୁନାଧର : କ'ଣ ପାଇଁ ?

ରମେଲା : ତୁମକୁ ବର ରୂପେ ପାଇବା ପାଇଁ ।

ସୁନାଧର : ଆଉ ଉତ୍ତର ଯଦି ଜାଣିଥାନ୍ତ ?

ରମେଲା : ନଜାଣିଛି ଭଲ ହୋଇଛି । ଏବେ କୁହ ତମ ପ୍ରଶ୍ନର ଉତ୍ତର । ମୋ ରାଣ ।

ସୁନାଧର କହିଲା, - ଏଇ କଥା ? ଶୁଣ ଫରସରା ଗାଁରେ ଦୁର୍ବଳ ବାଛୁରୀଟିଏ ଇଡ଼ିଂ ମିଡ଼ିଂ କରି ଯାଉଥିଲା । ଜଣକର ଘର ଛାତରେ କୁମୁଡ଼ା ଫଳିଥିଲା । କୁମୁଡ଼ା ଡିରକୁ ବାଛୁରୀଟି ଟାଣି ଦେଲା । ଛଣରୁ କୁମୁଡ଼ା ସର୍ବ୍ ଭଟକରି ତଳେ ପଡ଼ିଗଲା । ଜଣେ ସ୍ତ୍ରୀ ଲୋକ ତାକୁ ଦେଖୁଥିଲା । ତାକୁ ସେ ଚୁପ୍‌କିନା ନେଇଗଲା । କେହି ଦେଖି ନାହାନ୍ତି । ଏ ପ୍ରଶ୍ନ ଭିତରେ ଏଇ କଥାଟି ଥିଲା । ଯାକୁ ତମେ ଜାଣିଥିଲେ ମୋ ମୁଣ୍ଡକଟା ହୋଇଥାନ୍ତା । ଜାଣି ପାରିଲା ନାହିଁ । ଏଣୁ ମୋ ଘରକୁ ଆସିଲା । ମୁଁ ଓ ମୋ ଭାଉଜ ଥିଲୁ । ତମେ ଆସିଲ । ଦୁଇରୁ ତିନି ହେଲା କି ନାହିଁ ।

ରମେଲା କହିଲା : ଏ ମାଁ, ଏହା କେଉଁ ପାଠରେ ଲେଖା ?

ସୁନାଧର କହିଲା : ବିଦ୍ୟାର ବା କି କାର୍ଯ୍ୟ ଯଦି ବୁଦ୍ଧି ନାହିଁ । ରମେଲା ସୁନାଧର କୋଳରେ ମୁହଁ ଲୁଚାଇ କହିଲା, ତମ ପାଖରେ ମୁଁ ହାରିଲି । ତମେ ଏତେ ବୁଦ୍ଧିଆ ।



# ମାଧବ -ରୂପମତୀ ଗାଥା

ଗୌଡ଼ ସରଗିଗୁଡ଼ା ଗାଁ । ସେ ଗାଁରେ ଜଣେ ଗଉଁତିଆ ରହୁଥିଲା । ମହାଜନ ଲୋକ । ତାର ସାତଟି ପୁଅ । ସବୁ ପୁଅ ଲାଗି ବୋହୂ ଆଣି ସାରିଥିଲା । ତାର ବାରକୋଡ଼ି ଗାଈଗୋରୁ, ମଇଁଷି । ବର୍ଷାଦିନେ ତା ଘର ଲୁଦ୍‌ବୁଦି ଯାଏ । ଦିନେ ଗଉଁତିଆବୁଢ଼ା ପିଲାମାନଙ୍କୁ କହିଲା - ବାବୁ ମାନେରେ, ଇ ଗାଇଗୋରୁମାନଙ୍କୁ ତମେ କଦଲୀ କଛାର୍ କେ ନିଅ । ସେଠାରେ ଅଡାର୍(ଗୋଠ) ତିଆରି କର ସେଇଠି ରଖ। ନୋହିଲେ ମୋ ଘର ଦୁଆର ଭାଙ୍ଗି ଭୁସ୍‌କୁଲି ଯିବ ।

ସାତଭାଇ ଗାଈଗୋରୁ ମଇଁଷିକୁ ନେଇ ଚାଲିଲେ କଦଲୀ କଛାର । ସେଠି ଗୋଟିଏ ଅଡାର୍ ବସାଇଲେ । ସେଠି ତିନି ଚାରି ଦିନ ଗାଈଗୋରୁକୁ ରଖିଲେ । ରାତିରେ ଘରକୁ ଚାଲି ଆସନ୍ତି । ଦିନେ ଚୋରମାନେ ଆସି କେତୋଟି ଗାଈଗୋରୁ ନେଇଗଲେ । ଭାଇମାନେ ଜାଣିଲେ । ବୁଢ଼ା କହିଲା, ରାତିରେ ଗାଈ ଗୋରୁ ଜଗ । ନୋହିଲେ ସବୁ ଗାଈଗୋରୁ ଚୋରି ହୋଇଯିବ ।

ବୁଢ଼ା କଥାରେ ସାତଭାଇ ରାତି କଦଲୀ କଛାରେ କୁଡ଼ିଆରେ ରହିଲେ ।

ମଝିରାତି ନିଦ ମାରିନେଲା ସେମାନଙ୍କୁ । ଚୋରମାନେ ଆସି ସାତଭାଇର ଶଂଖ ସାରିଦେଲେ(ଗଳା କାଟି ଦେଲେ) । ସବୁ ଗାଈ ମଇଁଷିକି ନେଇଗଲେ ।

ସକାଳ ଗଉତିଏନ୍ ବୁଢ଼ୀ ଟାଣି ଧରି କରି ଆସିଲା । ଗୋରସ ଦୁହିଁବ । ଦେଖିଲା ଅଡାର୍ ଖାଲି । ଗୋଟିଏ ବି ଗାଈ ଗୋରୁ ନାହିଁ । ଅଡାର ପାଖ ଚାଳଘରକୁ ଗଲା । ସେଇଠି ପୁଅମାନେ ରାତିରେ ଶୋଇଥିଲେ । ଦେଖିଲା, ତାର ସାତଟି ଯାକ ପୁଅର ତଣ୍ଟି କଟା ହୋଇଛି । ଘର ସାରା ରକତ୍ । ବୁଢ଼ୀ ମୋ ସଂସାର ସରିଗଲା ବୋଲି କାନ୍ଦିଲା । ଘରକୁ ଆସି ସବୁ କଥା କହିଲା । ଗଉଁତିଆ ବୁଢ଼ା ମୁଣ୍ଡରେ ହାତଦେଇ କହିଲା, ଭଗବାନ, ଏଇଆ ଦେଖାଇବା ପାଇଁ ମୋତେ ବଂଚାଇ ରଖିଲୁ ?



ସେଇଠୁ ବୁଢ଼ା ଚାଷବାସ, ଗାଈଗୋରୁ ସବୁ ଭୁଲିଲା । ବଡ଼ ଛଅ ବୋହୂକୁ କିଛି ହୋଇନଥିଲା । ସାନବୋହୂ ଗର୍ଭବତୀ ହୋଇଥିଲା । ଦଶମାସ ପରେ ସେ ପୁଅଟିଏ ପାଇଲା । ପୁଅଟି ଧିରେ ଧିରେ ବଡ଼ ହେଲା । ଦିନେ ସାଙ୍ଗ ପିଲାଙ୍କ ସାଙ୍ଗରେ ବାଟି ଖେଳିଲା । ସମସ୍ତଙ୍କ ବାଟିକୁ ମାରି ଭାଙ୍ଗିଦେଲା । ସାଙ୍ଗପିଲା ରାଗରେ ତାକୁ କହିଲେ, ବିନ୍ ବାପାର ପୋଓ, ବାଟିମାରେ ଠୋ ଠୋ ।'

ମାଧବକୁ ଏହା ବାଧିଲା । ସେ ଘରେ ରୁଷିଲା । କିଛି ଖାଇଲା ନାହିଁ । ବୁଢ଼ା ଗଉଁତିଆ କହିଲା, ଖାଇଦେରେ ଦାଦି, ମାଧବ କହିଲା, ଶଳା ବୁଢ଼ା, ମୋତେ ନକହିଲେ ମୁଁ କିଛି ଖାଇବିନି । ମୋର ବାପ କିଏ ? ମୁଁ କିମିତି ବିନ୍ ବାପର ପୁଅ ହେଲି ?



ବୁଢ଼ା ସେଠୁ ମାଧବକୁ ସବୁକଥା କହିଲା । ମାଧବ ପଚାରିଲା, ମୋତେ-ସେଇ ଗାଈଗୋରୁ ଓ ମଈଷିର ରୂପ ଚିହ୍ନ କହିଦିଅ । ମୁଁ ମୋର ଶତ୍ରୁକୁ ଖୋଜି ମାରିବି । ବୁଢ଼ା ନାତିକୁ ସବୁ ଚିହ୍ନ ବର୍ଣ୍ଣକଥା କହିଦେଲା । ସେଠୁ ମାଧବ କହିଲା, ଦାଦି, ମୋତେ ପାଟଘୋଡ଼ା ଦେ । ବୁଢ଼ା କହିଲା, ''ପିଟ ଖୁସି'' ପୂଜା ନହେଲେ ପାଟଘୋଡ଼ା ବାହାରିବ କିପରି ? ମାଧବ ସେଠୁ 'ପିଟ ଖୁସି'ପୂଜା କଲା । ଚଣ୍ଡୀ ସମଲାଇ ୫ ।ର ବରଲା ଦେବତାଙ୍କୁ ପୂଜାକଲା । ପାଟଘୋଡ଼ା ପାଇଲା । ଘୋଡ଼ାର ବେକରେ ସାତଶହ ଘାଗୁଡ଼ି । ସେଇ ଘୋଡ଼ା ଧରି ମାଧବ ବାହାରିଲା ।

ଚୋରମାନେ ଗାଈଗୋରୁ ନେଲାବେଳେ ଗୋଟିଏ କାଣି ମଈଁଷି ଛାଡ଼ି ଯାଇଥିଲେ ବାଟରେ । ସେଇଠି ମାଧବ ପହଁଚିଲା । ଚିହ୍ନରୁ ଜାଣିଲା ଏହା ତାର ମଇଁଷି । ମଇଁଷିକୁ କହିଲା, ମୁଁ ଫେରିଲାବେଳେ ତୋତେ ଘରକୁ ନେବି ।

ସେଠୁ ଘୋଡ଼ା ଛୁଟିଲା । ଗୋଟିଏ ପରେ ଗୋଟିଏ ଗାଁ ପଡୁଥାଏ । ଶେଷରେ ପହଁଞ୍ଚିଲା ମହୁଲପାଟଣା ରାଇଜରେ । ସେଇଠି ଘୋଡ଼ା ଅଟକିଗଲା । ଆଉ ଆଗକୁ ଯିବାକୁ ଚାହିଁଲା ନାହିଁ । ମାଧବ ଜାଣିଲା, ଏଇଠି ତାହାହେଲେ ତା ଗୋଧନ ଅଛି । ସେ ଗୋଟିଏ ମହୁଲ ଗଛ ତଳେ ଠିଆ ହେଲା । ଗଛକୁ ହାତ ଯୋଡ଼ି କହିଲା, ମାଁ ମୋର ସନମାନ ତୋର କି ମୋର ? -ନାଇ ପୁତା, ମୋର ସନମାନ । ଏହା କହି ଗଛ ତିନିଫାଳ ହୋଇଗଲା । ମାଧବ ତାର ବେଶ ପୋଷାକ '' ସାଜି ଶିଂଗାର'' ସବୁ ରଖିଦେଲା । ଲେଙ୍ଗୁଟି ଟିଏ ପିନ୍ଧିଲା । ମନ୍ଦେ ଗଛର ଅଠାରେ ଦେହକୁ କାଛୁ କୁଣ୍ଡିଆ ପରି କରିଦେଲା । ଗାଁ ଭିତରକୁ ମାଗି ଖାଇଗଲା ।



ଯେଉଁଠି ତାର ଗାଈ ପୋଡ଼ ସବୁ ବନ୍ଧା, ସେଇଠି ପହଁଞ୍ଚିଲା । ସେ ଗାଁ'ର ମହାଜନର ସାତଟି ପୁଅ । ଗୋଟିଏ ଝିଅ ରୂପମତୀ ସେମାନେ ମାଧବକୁ ଦେଖି କହିଲେ । ତୁ କିଏ ? କାହିଁ ଆସିଛୁ ? ମାଧବ କହିଲା, ମୋର ଗାଁ, ମା'ବୁଆ କେହି ନାହିଁ । ମୋତେ କାମ କବାର ଗୋଟିଏ ଦିଅ ?

ସେଠୁ ମହାଜନ ଘରେ ତାକୁ ରଖିଲେ । ସେ ଗାଈ ଚରାଇଲା । ସବୁ ଗାଈ ମଇଁଷି ସହିତ ତା ସମ୍ପର୍କ ବଢ଼ିଗଲା । ମାଧବ ମହାଜନ ଘରର ସବୁ କାମ ବୁଝେ ।

ଦିନେ ମହାଜନ ଦେଖିଲା, ମାଧବ ବହୁତ କାମିକା ପିଲା ଯେତେ କାମ ଦେଲେ ବି ନାହିଁ କରେ ନାହିଁ । ବୁଢ଼ା ତାକୁ ଘରଜୋଇଁ କରିବାକୁ ଭାବିଲା । ପୁଅମାନଙ୍କୁ ଡାକି ଏକଥା କହିଲା, ଗାଁର ବନ୍ଧୁକୁଟୁମ୍ବଙ୍କୁ ବି ଡାକି କହିଲା । ସଭିଏଁ କହିଲେ, ମାଧବ ପରି ପିଲାଟିଏ ପାଇବା ଭାଗ୍ୟର କଥା ।

ବୁଢ଼ା ସେଠୁ ତା ଝିଅ ରୂପମତି ସଙ୍ଗେ ମାଧବର ବିଭା କରାଇ ଦେଲା । ହେଲେ ରୂପମତୀର ଇଛା ନଥିଲା । ମାଧବ ଘରଜୋଇଁ ହେଲା । ଇଜ୍ଜତ୍ ନଥିଲା ଲୋକ ଘର ଜୋଇଁ ହୁଏ । ମାଧବ ଦେହରେ କାଛୁ କୁଣ୍ଡିଆ । ଦେହ ଅସୁନ୍ଦର । ଆଖିରେ ନେଞ୍ଜରା । ମୁଣ୍ଡବାଳ ଫୁରୁ ବୁରୁ । ରୂପମତୀର ମନ ଭଲ ନଥାଏ ।

ମାଧବ ଗାଇମଇଁଷିଥିବା 'ଅଡାର'(ଗୋଠ)ରେ ରହେ । ଘରେ ରହେ ନାହିଁ । ସାଂଗରେ କୁକୁରଟିଏ ଥାଏ । ରୂପମତୀ ଅଇଁଠା କୁଇଁଠା ଖାଦ୍ୟ ଆଣେ । ମାଧବକୁ ଦିଏ । ମାଧବ ତାକୁ ଖାଏ ନାହିଁ । କୁକୁରକୁ ଦେଇଦିଏ । ନିଜେ ପାଣି ପିଇ ରହିଯାଏ । ଦେବୀ କୃପା ଅଛି । ଭୋକଶୋଷକୁ ସେ ଜିତିଛି । ସବୁଦିନ ରୂପମତୀ ମାଧବ ପାଖକୁ ଆସେ । ମାଧବକୁ ଗାଳି ଦିଏ । ନମରି କାହିଁକି ବଞ୍ଚିଛୁ ବୋଲି କହେ । ଅଲାଜୁକ ଘରଜୋଇଁ ବୋଲି କହେ । ମାଧବ କିଛି କହେ ନାହିଁ । ଚୁପ୍ ରହେ ।

ଦିନେ ରୂପମତୀର ମା' ପଚାରିଲା, କୁଆଡ଼େ ଯାଉଛୁ । ରୂପମତୀ କହିଲା, - ସେଇ ବାଗଧରା ମାଧବ ପାଖକୁ । ବୁଢ଼ୀ କହିଲା, ସିଏ ପରା ତୋ ସ୍ୱାମୀ । ତାକୁ ଗାଳି କାହିଁକି ଦେଉଛୁ । ତା ପରି ପିଲା ତୁ କେଉଁଠୁ ପାଇବୁ ? ଆମର ଭାଗ୍ୟ । ଆମେ ଏମିତି ଜୋଇଁ ପାଇଛୁଁ । ରୂମପତୀ ତାକୁ ଘୃଣା କରୁଛି । ଏଣୁ ନାନା ଗାଳି ଦେଲା ।

ତା' ମା କହିଲା, ଝିଅ, ତୁ ତାକୁ ଗାଳି ଦେ'ନା । ସେ ସୁନ୍ଦର ଯୁବକ, ବଳ, ଧନ ବୁଦ୍ଧି ବିଦ୍ୟା ସବୁ ଅଛି ତାର । ତୁ ଦେଖି ପାରୁ ନାହୁଁ । ତୋତେ ଅହଁକାର ଘାରିଛି । ତୁ ଆଜିରାତିରେ ଯାଇ ଦେଖିବୁ ସେ କିଏ ? ରୂପମତୀ ସେଦିନ ରାତିରେ ତା ମା ସାଙ୍ଗରେ ଗଲା । ଅଧାରାତି । ଦେଖିଲା, ଜଣେ ସୁନ୍ଦର ଯୁବକ ଘୋଡ଼ାରେ ବସିଛି । ଗାଇଗୋଠ ଚାରିପଟେ ବୁଲୁଛି । ରୂପମତୀକୁ ମା' କହିଲା, ଇଏ ସେଇ ମାଧବ । ତାର ହିମତ୍ ନଥିଲେ ବାରକୋଡ଼ି ଗାଈକୁ ସମ୍ଭାଳିଥାନ୍ତା ? ରୂପମତୀ ନିଜ ଭୁଲ ବୁଝିପାରିଲା । ଚୁପ୍‌ଚାପ୍ ଘରକୁ ଫେରିଲା । ସକାଳୁ ଡାଲି ଚାଉଳ ଧରି ଅଡାର୍‌କୁ ଗଲା । ଦେଖିଲା, ମାଧବ ମଇଳା ଦେହ, କାଛୁକୁଣ୍ଡିଆ ହୋଇ ବସିଛି ।

ରୂପମତୀ ବୁଝିଗଲା, ଇଏ ବାହାରକୁ ଏ ରୂପ ଧରିଛି । ଅସଲ ରୂପ ରାତିରେ । ଭାତ ଡାଲି ତରକାରୀ ରାନ୍ଧିଲା । ମାଧବକୁ ଭଲ କରି ଖାଇବାକୁ ଦେଲା । ଦୋଷ ମାନିଲା । କ୍ଷମା ମାଗିଲା ।

ମାଧବ କହିଲା, ରୂପମତୀ, ତୁ ଆଜିଯାଏଁ ମୋତେ ଗାଳି କରିଛୁ । ମୁଁ ଦୋଷ ଧରୁ ନାହିଁ । ହେଲେ ମୋର ବହୁତ କାମ । ତୁ ମୋତେ ସାହାଯ୍ୟ କରି ପାରିବୁ ନାହିଁ । ରୂପମତୀ କହିଲା - ଘରଜିଆଁ, ତୁ ଯାହା କହିବୁ ତାହା ମାନିବି ।

ମାଧବ କହିଲା - ଘର ଛାଡ଼ି ପାରିବୁ ? ରୂପମତୀ କହିଲା, ତୋ ପାଇଁ ସବୁ ଛାଡ଼ିଦେବି ।

ମାଧବ ଧାନ କୁଲା ଆଣିଲା । ଦେବୀଙ୍କୁ ପ୍ରସନ୍ନ କଲା । କହିଲା, ମା' ମୋର ଗାଈଗୋରୁ ଆଉ

ମହାଜନ ବୁଢ଼ାର ଗାଈଗୋରୁ ଅଲଗା କରିବେ। ଦେବୀ କୃପା କଲେ। ମାଧବର ଗାଈଗୋରୁ ଗୋଟିଏ ପାଖରେ। ଆଉ ମହାଜନ ବୁଢ଼ାର ଗାଈଗୋରୁ ଆର ପାଖରେ।

ସେଠୁ ମାଧବ ରୂପବତୀକୁ କହିଲା, ଆଜି ରାତିରେ ମୁଁ ଘର ଛାଡ଼ି ଯିବି। ତୁ ଯିବୁ ହେଲେ ଚାଲ। ତୋର ନିଜର ଲୁଗାପଟା, ସୁନାରୂପା ଯାହା ଧରିବୁ ଧର। ରୂପମତୀ ହଁ କଲା।

ଅଧାରାତି ପିତା ନିଦ ବେଳେ ମାଧବ ରୂପମତୀକୁ ଧରି ବାହାରିଲା। ସାଙ୍ଗରେ ତା ଗାଈଗୋଠ। ଘୋଡ଼ାରେ ମାଧବ ରୂପମତୀକୁ ବସାଇଲା। ଗାଈଗୋରୁ ଆଗରେ। ମାଧବ ପଛେ ପଛେ। ଦଉଡ଼ିଲେ ରାତିସାରା। ବାଟରେ ନଦୀଟିଏ ପଡ଼ିଲା। ପାଣି ଏ କୂଳ ସେକୂଳ। ମାଧବ ଡରିଗଲା। ଯଦି ତା ଶ୍ୱଶୁର ବୁଢ଼ା ଓ ଶଳା ଜାଣିବେ ତେବେ ତ କଥା ସରିଲା। ଚୋର ବୋଲି ମାରିଦେବେ। ରୂପମତୀ ବି ଭୟରେ କାନ୍ଦି ପକାଇଲା।

ଗାଈ ଓ ମଇଁଷି ଜାଣିଲେ, ମାଧବ ଅଡୁଆରେ ପଡ଼ିଛି। ସେମାନେ ତିନି ଧାଡ଼ି ହେଲେ। ନଈ ଭିତରକୁ ଧସେଇ ପଶିଲେ। ପିଠି ଉପରେ ଘୋଡ଼ା ଘୋଡ଼ା ଉପରେ ମାଧବ ରୂପମତୀ। କିଛି ନାହିଁ, ଦେଖୁ ଦେଖୁ ନଈ ପାରିହେଲେ।

ସେଇଠୁ ପଡ଼ିଲା ଗୋଟିଏ ରାଜ୍ୟ। ଏତେ ଗାଈଗୋରୁ ଓ ସୁନ୍ଦରୀ ଯୁବତୀ ଜଣେ ଲୋକ ନେଇଯାଉଛି। ଦେଖିଲା ଲୋକ ଏମିତି ଭାବିଲେ। ସେମାନେ ରଜାକୁ ଜଣାଇଲେ। ରଜା ସୈନ୍ୟ ପଠାଇଲା। ଯୁଦ୍ଧ କଲା। ଯୁଦ୍ଧରେ ରଜାର ସୈନ୍ୟ ହାରିଲେ।

ଏମିତି ତିନିଟି ରାଜ୍ୟ ପାରି ହୋଇ ଆସିଲେ। ମାଧବ କାଣି ମଇଁଷି ପାଖକୁ ଆସିଲା। ରୂପମତୀ ପଚାରିଲା, ଇଏ କିଏ ? ଏଠି କାହିଁକି ଅଟକିଲା ! ମାଧବ କହିଲା, ଏବେ କିଛି ପଚାର୍ ନାହିଁ। ସବୁ ଉତ୍ତର ଘରେ ଆପେ ଆପେ ପାଇବୁ।

କାଣି ମଇଁଷି ଓ ଅନ୍ୟ ଗାଈଗୋରୁ ସବୁ କଦଲୀକଛାରକୁ ଆସିଲେ। ସେଇଠି ମାଧବ ଦେଖିଲା, କୁଡ଼ିଆରେ ସାତଟି ଖଟ ପଡ଼ିଛି। ଖଟ ତଳେ ଶୁଖିଲା ରୁଧିର। ସାତଟି କଙ୍କାଳ ପଡ଼ିଥାଏ। ମାଧବ ଭାବିଲା, ଆଜି ସବୁ ଗାଈ ଗୋରୁ ଉଦ୍ଧାର କରି ଆଣିଲି। ଏଇ ଗାଈଗୋରୁ ପାଇଁ ଚୋରମାନେ ମୋର ବାପା, ବଡ଼ବାପାମାନଙ୍କୁ ମାରିଥିଲେ। ଏହା ଭାବି ସେ ଦୁଃଖରେ କାନ୍ଦି ପକାଇଲା। ତା ଦୁଃଖରେ ରୂପମତୀ ବି କାନ୍ଦି ପକାଇଲା। ଗାଈଗୋରୁ ଆଖିରେ ବି ଲୁହ ଗଡୁଥାଏ।

ମାଧବ ସେଇଠୁ କହିଲା, ମୁଁ ଏଡେ ଅଭାଗା ଯେ, ଜନ୍ମ ହେବା ଆଗରୁ ବାପାକୁ ହରାଇଲି। ବଡ଼ବାପାଙ୍କୁ ହରାଇଲି। ମୁଁ ଗାଈଗୋରୁ ଫେରାଇ ଆଣିଛି। କିଏ ଏହା ଦେଖିବ। ଜାଣିବ। ଏହା ଭାବି ସେ କାନ୍ଦିବାରେ ଲାଗିଲା।

ମାଧବର କାନ୍ଦ ଈଶ୍ୱର ମହାପ୍ରଭୁ ଶୁଣୁଥିଲେ । ସେ ତା ଦୁଃଖ ସହି ନପାରି ମାଧବ ପାଖକୁ ଆସି କହିଲେ, ବାବୁ, କାନ୍ଦୁଛୁ କାହିଁକି ? ମୁଁ ସାତଦିନ ସାତରାତି ହେଲା ତୋ କାନ୍ଦ ଶୁଣୁଛି । କାରଣ କହ । ମାଧବ କହିଲା, ଈଶ୍ୱର ମହାପ୍ରଭୁ, ମୋର ଜୀବନରେ ଦୁଃଖ ରହିଗଲା । ମୋ ପୂର୍ବପୁରୁଷ ମୋ ପୁରୁଷାର୍ଥ ଦେଖିପାରିଲେ ନାହିଁ । ସେମାନଙ୍କ ହାଡ଼ ଦେଖି ମୋତେ କାନ୍ଦି ଲାଗିଲା । ମହାପ୍ରଭୁ, ମାଧବକୁ ସେଇ କୁଡ଼ିଆକୁ ନେଲେ । ଦେଖିଲେ ସାତଟି କଙ୍କାଳ ପଡ଼ି ରହିଛନ୍ତି । ମହାପ୍ରଭୁ କମଣ୍ଡଳରୁ ଜଳ ବାହାର କଲେ । ସଂଜୀବନୀ ମନ୍ତ୍ରରେ ଜଳକୁ ସିଦ୍ଧ କଲେ । ଆଉ ସେଇ କଙ୍କାଳମାନଙ୍କ ଉପରେ ଛିଞ୍ଚି ଦେଲେ । ସମସ୍ତେ ଜୀବନ ପାଇ ଉଠିଲେ । ଉଠି ବସି ଯିଏ ଯାହା ବାଟରେ ପଳାଇବାକୁ ଲାଗିଲେ । ମାଧବ ସମସ୍ତଙ୍କୁ ଅଟକାଇଲା । କହିଲା, ତୁମେ କେହି ଯାଅ ନାହିଁ । ତୁମେ ସବୁ ମୋର ବଡ଼ବାପା । ତାହା ଶୁଣି ସେମାନେ ମାଧବ ପାଖକୁ ଆସିଲେ । ପଚାରିଲେ ତୁ କିଏ ? ମାଧବ ସବୁ କଥା କହିଲା । ତାପରେ ପଚାରିଲା ତୁମ ଭିତରୁ ସାନ କିଏ । ସାନ ଭାଇ କହିଲା, ମୁଁ ସାନ । ମାଧବ କହିଲା, ତୁମେ ମୋର ବାପା । ତାପରେ ସମସ୍ତଙ୍କୁ କହିଲା, ତମେମାନେ ମୋର ବଡ଼ ବଡ଼ୁ, ମଝିଆ ବଡ଼ୁ, ବଡ଼ମଝିଆ ବଡ଼ୁ, ସାନ ମଝିଆ ବଡ଼ୁ । ତଥାପି ଏମାନେ ମାଧବ କଥା ଶୁଣି ବିଶ୍ୱାସ କଲେ ନାହିଁ ।



ମାଧବ ତା' ବାପା ବଡ଼ବାପା ଓ ଗାଈଗୋରୁଙ୍କୁ ଧରିଲା । ଗୌଡ଼ ସରଗିଗୁଡ଼ା ଗାଁକୁ ବାହାରିଲା । ସାଙ୍ଗରେ ରୂପମତୀ । ବାଟରେ ଗୋଟିଏ ଛେଳି ଚରାଉ ଥିବା ପିଲାଙ୍କୁ ଦେଖିଲା । କହିଲା, ଯା, ବୁଢ଼ା ଗଉଁତିଆକୁ କହିବୁ, ତାର ସାତଟି ପୁଅ ଆଉ ନାତି ଓ ନାତି ବୋହୂ ଆସୁଛନ୍ତି । ପରଘା ବନ୍ଦନା କରିଦେବ । ବଜାଗଜା ଧରି ପରଘାଇବ । ଛେଳି ଚରୁଆ ପିଲା ଗଲା । ଗଉନ୍ତିଆ ବୁଢ଼ା ପାଖରେ ପହଞ୍ଚି ସବୁ କଥା କହିଲା । ଗଉନ୍ତିଆ ବୁଢ଼ା ଏହାଶୁଣି କହିଲା, ଶଳା, ମୋତେ ଠକିବାକୁ ଆସିଛୁ ? ହେଲେ ଛେଳି ଚରୁଆ ପିଲା କହିଲା, ସତରେ ସେମାନେ ଆସୁଛନ୍ତି । ସେଠୁ ବୁଢ଼ା ଲୋକପଠାଇ ଜାଣିଲା, ସତରେ ସମସ୍ତେ ଆସୁଛନ୍ତି । ବୁଢ଼ା ଗାଁ ଲୋକଙ୍କୁ ଖୁସିରେ ବଜାଗଜା । 'ଖୋଲ କୀର୍ତ୍ତନ' ଧରି ବାହାର ହେଲା । ସ୍ତ୍ରୀ ଲୋକ ପରଘା ବନ୍ଦନା ପାଇଁ ଚାଉଳ, ହଳଦୀ, ପାଣି କଲେ ।

ବୁଢ଼ା ଦେଖିଲା ତାର ବାରକୋଡ଼ି ଗାଈ ମଇଁଷି ଆସୁଛନ୍ତି । ସାତପୁଅ ଆସୁଛନ୍ତି । ସାଙ୍ଗରେ ମାଧବ ନାତି ଆଉ ସୁନ୍ଦରୀ ଝିଅଟିଏ । ବୁଢ଼ାର ଖୁସିରେ ଆଖିରୁ ଲୁହ ଧାର ଧାର ଗଡ଼ିଯାଉଥାଏ । ତାର ଉଜୁଡ଼ି ଯାଇଥିବା ସଂସାର ପୁଣିଥରେ ହସିଉଠିଲା । ବୋହୂମାନେ ଚୁଡି ଚୁପି ସାରିଥିଲେ । ସଭିଏଁ ଆଦରରେ ବନ୍ଦାପନା କଲେ । ଘରକୁ ଆଣିଲେ । ଗାଁରେ ଭୋଜି ଭାତ ହେଲା ।

ବୁଢ଼ା ନାତି ମାଧବକୁ ପଚାରିଲା, ଶଳା, ଏ ଝିଅ କେଉଁଠୁ ଉଡେଇ ଆଣିଛୁ । ମାଧବ କହିଲା, ଦାଦି, ମୁଇଁ ମାଏଜି ଚୋର ନୁହେଁ । ମୋତେ ମହୁଲପାଟଣାର ଗଉନ୍ତିଆ ବୁଢ଼ା ଘରଜିଆ ରଖିଥିଲା । ଇଏ ତା' ଝିଅ ରୂପମତୀ ।

ବୁଢ଼ା କହିଲା, ଗାଈଗୋରୁ କେଉଁଠି ପାଇଲୁ ? ମାଧବ କହିଲା, ମହୁଲପାଟଣା ଗଉନ୍ତିଆର 'ଅଡାର'ଠାରୁ ପାଇଲି । ସେଠିକି କିମିତି ଗାଈଗୋରୁ ଗଲେ ? ମାଧବ କହିଲା, ଇଚ୍ଛାପୁର ପାର୍ବତୀପୁରର ଗୋଲାମାନେ ଗାଈଚୋର । ଆମ କଦଳୀ କଛାରରୁ ଗାଈ ନେଇ ମହୁଲପାଟଣାରେ ବିକି ଦେଲେ । ପଇସାପତ୍ର ଧରି କାଶୀପୁର ଦେଇ ପଳେଇଲେ ।

ମୁଁ ଶଶୁର ବୁଢ଼ାଠାରୁ ଏହା ଜାଣିଲି । ହେଲେ ଶଶୁର ବୁଢ଼ା ଜାଣି ନାହିଁ ଏ ଗାଈ ଗୋରୁ ଆମର ବୋଲି । ରୂପମତୀକୁ ବୁଝିବାକୁ ବାକି ରହିଲା ନାହିଁ, ତା ସ୍ୱାମୀ ଗୌଡ଼ ସରଗିଗୁଡ଼ାର ଗଉନ୍ତିଆ ବୁଢ଼ାର ନାତି । ବହୁତ ଖୁସି ହେଲା । ଲୋକ ପଠାଇ ବାପ ଘରକୁ ଖବର ଦେଲା । ଘରଜିଆଁ ମାଧବ ଗୌଡ଼ ସରଗିଗୁଡ଼ାର ଗଉନ୍ତିଆ ଘର ନାତି ବୋଲି ଜାଣିଲେ । ରୂପମତୀର ବାପା ମହୁଲପାଟଣାର ଗଉନ୍ତିଆ ଲିଆପିଠା ଭାର, ଛେଳି ମେଣ୍ଢା, ଧରି ଗୌଡ଼ ସରଗିଗୁଡ଼ା ଆସିଲା । ବନ୍ଧୁ ସମଦି ଭେଟ ହେଲା ।

ଦୁଇ ପରିବାର ମଧ୍ୟରେ ଖୁସିର ଲହରୀ ଖେଳିଗଲା ।




## ଆମ ଦ୍ୱାରା ପ୍ରକାଶିତ ଓ ବିତରିତ କେତେକ ଉପାଦେୟ ପୁସ୍ତକ

**ଶିକ୍ଷା ସମ୍ବନ୍ଧୀୟ**

ଜଣେ ଶିକ୍ଷକଙ୍କୁ ଚିଠି ଟ. ୬୦.୦୦

ମୋ ହୃଦୟ ପିଲାଙ୍କ ପାଇଁ ଟ. ୬୦.୦୦

ଶିକ୍ଷା ବିତର୍କ ଟ. ୩୬.୦୦

ପିଲାଏ ଶିଖନ୍ତି କିପରି ? ଟ. ୭୫.୦୦

ଜଙ୍ଗଲ ଚିଠି ଟ. ୫୦.୦୦

ଜୀବନ ବିଦ୍ୟାଳୟ ଟ. ୩୫.୦୦

ଯନ୍ତ୍ରଣାୟା ପୋଲିୟାନା ଟ. ୬୦.୦୦

ବିଦ୍ୟାଳୟରେ ମସ୍ତିଷ୍କ ନୁହେଁ, ହୃଦୟ ଟ. ୫୦.୦୦

ଓଡ଼ିଶାରେ ମୌଳିକ ଶିକ୍ଷାର ପ୍ରୟୋଗ (ଯନ୍ତ୍ରସ୍ଥ)

**ପତ୍ରିକା**

ଶିକ୍ଷା ଓ ଚେତନାର ବାର୍ତ୍ତାବହ -

ଶିଖା ଟ.୦୬.୦୦ (ଦ୍ୱିମାସିକ)

ଶିକ୍ଷା ସମ୍ବାଦ ଟ. ୪୦.୦୦ (ବାର୍ଷିକ ୩ଟି)

**ଜୀବନ କାହାଣୀ**

ମୁଁ, ରିଗୋବେର୍ଟା ମେଞ୍ଚୁ ଟ. ୧୦୦.୦୦

କ୍ରିଷ୍ଟେନ୍ କଲ୍ପ (ଯନ୍ତ୍ରସ୍ଥ)

**ଶିଶୁ ସାହିତ୍ୟ**

ସାଗରପଥ ଟ. ୩୦.୦୦

ପୃଥିବୀର ପିଲାଦିନେ ଟ. ୨୫.୦୦

ଗୋଣ୍ଡ ଲୋକକଥା

ବୀରଗାଥା

କୁହୁମୀ ଲୋକକଥା

### ଅନ୍ୟ କେତୋଟି ସ୍ଥାନରେ ଆମ ଦ୍ୱାରା ପ୍ରକାଶିତ ପୁସ୍ତକର ପାଇବା ଠିକଣା :

ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ପାରଳା ଖେମୁଣ୍ଡି, ପଥିକ ପ୍ରକାଶନୀ, ଏଲ୍-୧୬୬, ଭିଜିପି କଲୋନୀ, ରସୁଲଗଡ଼, ଭୁବନେଶ୍ୱର, ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଶ୍ରୀଅରବିନ୍ଦ ନଗର, ରାୟଗଡ଼ା, ନିୟୁ ରେସ୍, ବାଲେଶ୍ୱର, ଆଶା ପୁସ୍ତକାଳୟ, ପୁରୁଣା ବସ୍‌ଷ୍ଟାଣ୍ଡ, ବ୍ରହ୍ମପୁର, ଦି ବେଷ୍ଟ ବୁକ୍ ସପ୍, ରାଉରକେଲା, ଶ୍ରୀମୟୀ ଷ୍ଟୋର, ଶ୍ରୀଅରବିନ୍ଦ ପୂର୍ଣ୍ଣାଙ୍ଗ ଶିକ୍ଷାକେନ୍ଦ୍ର, ଖଣ୍ଡଗିରି, ଭୁବନେଶ୍ୱର